ଛାତ୍ରସାଥୀ ର ବିଶ୍ୱ ବିଚିତ୍ରାଙ୍କ



# ଜୋଲିଅଟ୍ କ୍ୟୁରୀ

# ଛାତ୍ରସାଥୀ : ବିଶ୍ୱବିଚିତ୍ରା (୪୩)

ଓ

# ଜୋଲିଏଟ କ୍ୟୁରୀ


୨୩ଶ ବର୍ଷ　　୭ମ ସଂଖ୍ୟା

୧୯୮୬

●

ସଂପାଦକ

ଶ୍ରୀ ସୁବାସ ଷଡଙ୍ଗୀ

●

ପରିକଳ୍ପନା ସଂପାଦକ :

ଶ୍ରୀ ନବକିଶୋର ମହାପାତ୍ର

ପ୍ରକାଶକ

ଜେ. ମହାପାତ୍ର ଏଣ୍ଡ କୋ.ଙ୍କ

ତରଫରୁ

ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା

ଗ୍ରାମପଞ୍ଚାୟତ ପ୍ରେସ

କଟକ-୨ ରେ ମୁଦ୍ରିତ

ମୂଲ୍ୟ　ଟ ୬-୦୦


## ସୂଚୀପତ୍ର

# ଆଜି ଆପଣଙ୍କ ଘରେ ଆନନ୍ଦ ନାହିଁ କାହିଁକି ?



ଆପଣଙ୍କ ଘରକୁ ବୋଧହୁଏ

(ମାସିକ ଶିଶୁ ପତ୍ରିକା)

ଆସୁ ନାହିଁ ।।

•

ନିଜ ପିଲାଙ୍କ ମନୋରଞ୍ଜନ ତଥା ଜ୍ଞାନ ବୃଦ୍ଧି ପାଇଁ ପ୍ରତିମାସରେ



(ମାସିକ ଶିଶୁ ପତ୍ରିକା) -

କିଣନ୍ତୁ ।

ପ୍ରତି ସଂଖ୍ୟାର ମୂଲ୍ୟ ଟ ୨-୦୦

ପ୍ରାପ୍ତିସ୍ଥାନ

ଡି.ଜେ. ମହାପାତ୍ର ଝଣ୍ଡୁଜୋ:

କଟକ - ୨

# ଜୋଲିଓ କ୍ୟୁରୀ

ପୃଥିବୀର ଇତିହାସରେ ପିଏର କ୍ୟୁରୀ ଓ ମାଦାମ କ୍ୟୁରୀଙ୍କ ନାମ ଯେପରି ଚିରକାଳ ଅମର ହୋଇ ରହିଥିବ, ସେହିପରି ଏହି ଆଦର୍ଶ ବୈଜ୍ଞାନିକ ଦମ୍ପତିଙ୍କ କନ୍ୟା ଡକ୍ଟର ଆଇରିନ୍ କ୍ୟୁରୀ ଏବଂ ଜାମାତା ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କ ନାମ ମଧ୍ୟ ଚିରକାଳ ଅମର ହୋଇ ରହିବ । ଆଉ କୌଣସି କ୍ଷେତ୍ରରେ ପ୍ରତିଭାର ଏପରି ଉତ୍ତରାଧିକାରର ଦ୍ୱିତୀୟ ଉଦାହରଣ ନାହିଁ କହିଲେ ଚଳେ ।

ଅଳ୍ପ କେତେବର୍ଷ ହେଲା ବିଶ୍ୱବିଖ୍ୟାତ ବୈଜ୍ଞାନିକ ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କର ମୃତ୍ୟୁ ଘଟିଛି । ମୃତ୍ୟୁବେଳକୁ ତାଙ୍କର ବୟସ ଅଠାବନ ବର୍ଷ ହୋଇଥିଲା । ସେ ୧୯୦୦ ମସିହାରେ ଫରାସୀ ଦେଶରେ ଏକ ଅତିଶୟ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ବର୍ଷ ପାଞ୍ଜି ଅନୁସାରେ ସେ ଯେପରି ଗୋଟିଏ ଶତାବ୍ଦୀର ପ୍ରାରମ୍ଭ ମୁହୂର୍ତ୍ତରେ ପୃଥିବୀରେ ଜନ୍ମଗ୍ରହଣ କରିଥିଲେ, ଅନ୍ୟ ଅର୍ଥରେ ସେ ସେହିପରି ବୈଜ୍ଞାନିକ ଚିନ୍ତାଧାରା ଓ ମାନବିକ ପ୍ରଗତି କ୍ଷେତ୍ରରେ ଏକ ନୂତନ ଶତାବ୍ଦୀର ଶୁଭ ଉଦ୍‌ବୋଧନ କରିଯାଇଛନ୍ତି ।

ଜୋଲିଏଟ୍ ତ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ, ଫଳରେ ବିଶେଷ କିଛି ଶିକ୍ଷାଦୀକ୍ଷା ଲାଭ କରିପାରିଲେ ନାହିଁ । ନିଜର ଭରଣପୋଷଣ ପାଇଁ ଖଣ୍ଡିଏ ଚାକିରି ଅନ୍ୱେଷଣରେ ବାହାରିଲେ । ସେଦିନର ସେହି ଚେକର କିଶୋର ଯଦି ଦୈବକ୍ରମେ କୌଣସି ଲୁଗା ଦୋକାନରେ କିମ୍ବା ହୋଟେଲରେ ଚାକିରିଟିଏ ପାଇଯାଇଥାନ୍ତେ, ତେବେ ଆଜି ପୃଥିବୀର ଘଟଣା ପ୍ରବାହ ଅନ୍ୟରୂପ ନେଇଥାନ୍ତା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଦୈବକୁ ଜୋଲିଏଟ୍ ଆସି ଜୁଟିଲେ ପିଏର୍ କ୍ୟୁରୀ ଏବଂ ମାଦାମ୍ କ୍ୟୁରୀଙ୍କର ବିଶ୍ୱବିଖ୍ୟାତ ଗବେଷଣାଗାରରେ । ସେଠାରେ ସେ ସାମାନ୍ୟ ଚାକିରିଟିଏ କରି ରହିଲେ ; କିନ୍ତୁ ନିହାତି କିଶୋର ହୋଇଥିଲେ ବି ଏବଂ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇଥିଲେ ବି ଜୋଲିଏଟଙ୍କ ଭିତରେ ଯେଉଁ ଆଶ୍ଚର୍ଯ୍ୟ ବୁଦ୍ଧି ଓ ଯୁଗାନ୍ତକାରୀ ପ୍ରତିଭା ନିହିତ ରହିଥିଲା, ଗୁଣଗ୍ରାହୀ ପିଏର କ୍ୟୁରୀଙ୍କ ଅନୁସନ୍ଧାନୀ ଆଖିରୁ ତାହା ଲୁଚି ରହିଲା ନାହିଁ । ସେ ଜୋଲିଏଟ୍‌ଙ୍କୁ ତାଙ୍କ ମନମୁତାବକ ବୁଦ୍ଧିର ପ୍ରୟୋଗ ପାଇଁ ଯଥେଷ୍ଟ ସୁଯୋଗ ଦେଲେ । କ୍ରମେ ପିଏର୍ କ୍ୟୁରୀ ଏବଂ ମାଦାମ କ୍ୟୁରୀଙ୍କର ସ୍ନେହଶ୍ରଦ୍ଧା ପାଇ ଜୋଲିଏଟ୍ ମଧ୍ୟ ତାଙ୍କର ପରିବାରର ଜଣେ ସଭ୍ୟ ହୋଇଉଠିଲେ । ସେହିଠାରେ କାର୍ଯ୍ୟ କରୁ କରୁ ଦିନେ ସେ "କୃତ୍ରିମ ତେଜସ୍କ୍ରିୟତା"ର ଆବିଷ୍କାର କଲେ ।

ଏଇ 'କୃତ୍ରିମ ତେଜସ୍କ୍ରିୟତା'ର ଆବିଷ୍କାରର ଫଳରେ ପରମାଣୁ ଗବେଷଣା କ୍ଷେତ୍ରରେ ଏକ ନୂତନ ଯୁଗର ସୂତ୍ରପାତ ହେଲା ଏବଂ ଆଜିର ପୃଥିବୀରେ ଉଭୟ ମାରଣାସ୍ତ୍ର ହିସାବରେ ଓ ଶାନ୍ତିପୂର୍ଣ୍ଣ ବିକାଶ ମାର୍ଗର ସହାୟକରୂପେ ପରମାଣୁ ଶକ୍ତି

ଯେ ଏତେ ଗୁରୁତର ଭୂମିକା ଗ୍ରହଣ କରୁଛି, ଏହି ଅବିଷ୍କାର ବିନା ତାହା ସମ୍ଭବପର ହୋଇନଥାନ୍ତା ।

ଏହି ଅବିଷ୍କାର କଥା ବିଶଦ ଭାବରେ କହିବା ପୂର୍ବରୁ ଜୋଲିଏଟଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଗୋଟିଏ ସମ୍ବାଦ ଦେବା ଆବଶ୍ୟକ । ପିଏର କ୍ୟୁରୀଙ୍କ ଗବେଷଣାଗାରରେ କାମ କରୁଥିବା ସମୟରେ ଯେ କ୍ୟୁରୀ ଦମ୍ପତିଙ୍କ କନ୍ୟା ଆଇରିନ୍ କ୍ୟୁରୀଙ୍କ ପ୍ରତି ଆକୃଷ୍ଟ ହେଲେ । ଆଇରିନ୍ କ୍ୟୁରୀ ମଧ୍ୟ ଜୋଲିଏଟ୍‌ଙ୍କୁ ଭଲପାଇ ବସିଲେ । ଏଇ ପରସ୍ପର ଭଲପାଇବା ୧୯୨୬ ମସିହାରେ ବିବାହରେ ପରିଣତ ହେଲା । ଜୋଲିଏଟ୍‌ଙ୍କୁ ସେତେବେଳେ ଛବିଶ ବର୍ଷ ବୟସ ଏବଂ ଆଇରିନ୍‌ଙ୍କୁ ଅଣତିରିଶ ବର୍ଷ, ଅର୍ଥାତ୍ ଆଇରିନ୍ କ୍ୟୁରୀ ଜୋଲିଏଟଙ୍କଠାରୁ ବୟସରେ ତିନି ବର୍ଷ ବଡ଼ ଥିଲେ । କ୍ୟୁରୀ ପରିବାର ପ୍ରତି ନିଜର ଅସୀମ ଶ୍ରଦ୍ଧାର ପରିଚୟ ସ୍ୱରୂପ ଜୋଲିଏଟ୍ ନିଜ ନାମପରେ "କ୍ୟୁରୀ" ପଦବୀ ଗ୍ରହଣ କଲେ ଏବଂ ତାଙ୍କ ନାମ ହେଲା 'ଫ୍ରେଡେରିକ ଜୋଲିଏଟ୍ କ୍ୟୁରୀ' । ଆଇରିନ୍ 'ଜୋଲିଏଟ' ଏବେ ଗ୍ରହଣ କରିବା ଫଳରେ ତାଙ୍କର ନାମ ହେଲା ଆଇରିନ୍ କ୍ୟୁରୀ ଜୋଲିଏଟ୍ । ବିବାହିତ ଜୀବନରେ ପଦବୀ ଅଦଳବଦଳ ଫଳରେ ସେମାନେ ଯେ ଏକ ନୂତନ ଉଦାହରଣର ସୃଷ୍ଟି କଲେ ସେତିକି ନୁହେଁ, ପରସ୍ପର ପ୍ରତି ଗଭୀର ଶ୍ରଦ୍ଧା ମମତା ସହକାରେ ଶେଷ ପର୍ଯ୍ୟନ୍ତ ଯେପରି ଭାବରେ ସେମାନେ ବିଜ୍ଞାନର ବିକାଶ ଦିଗରେ ସୁସ୍ଥ ଜୀବନ ଅତିବାହିତ କରିଯାଇଛନ୍ତି, ତାହାର ଉଦାହରଣ ମିଳିବା କଷ୍ଟସାଧ୍ୟ ।

ଜୋଲିଏଟ୍ କ୍ୟୁରୀଙ୍କର 'କୃତ୍ରିମ ତେଜସ୍କ୍ରିୟତା' ଆବିଷ୍କାର ଫଳରେ ପରମାଣୁ କେନ୍ଦ୍ରରେ ନ୍ୟୁଟ୍ରନର ସନ୍ଧାନ ମିଳିଲା । ପରମାଣୁ ବିଜ୍ଞାନ ସଂକ୍ରାନ୍ତରେ ବୈଜ୍ଞାନିକମାନେ ଏହା ଫଳରେ ବହୁ ନୂତନ ତଥ୍ୟ ଆହରଣ କରି ପାରିବାର ସୁଯୋଗ ଲାଭକଲେ । ଏହି ପ୍ରକାର ଏକ ଆବିଷ୍କାର ସକାଶେ ଧରା ପୃଥିବୀର ବହୁ ବିଶିଷ୍ଟ ବୈଜ୍ଞାନିକ ବହୁ ପୂର୍ବରୁ ଚେଷ୍ଟା କରି ଆସୁଥିଲେ ; କିନ୍ତୁ ଏହିପରି ସଠିକ୍ ଆବିଷ୍କାରର ପର୍ଯ୍ୟାୟରେ କେହି ପହଞ୍ଚି ପାରିନଥିଲେ । ୧୮୦୮ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ସୁବିଖ୍ୟାତ ବିଜ୍ଞାନାଚାର୍ଯ୍ୟ ଜନ୍ ଡାଲଟନ ତାଙ୍କର 'ପରମାଣୁବାଦ ତଥ୍ୟ' ପ୍ରକାଶକରି ପୃଥିବୀ ବ୍ୟାପୀ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ । ସେତେବେଳର ବୈଜ୍ଞାନିକ ଗବେଷଣାରେ 'ପରମାଣୁ' ଭଳି ଏକ ସୂକ୍ଷ୍ମ ବସ୍ତୁର ଶକ୍ତି ଘୋଷଣା ଯଥେଷ୍ଟ ଚମତ୍କାରପ୍ରଦ ଥିଲା ସନ୍ଦେହ ନାହିଁ; କିନ୍ତୁ ଏଇ ପରମାଣୁବାଦ ତଥ୍ୟ ଉପରେ କ୍ରମାନ୍ୱୟରେ ଅଧିକରୁ ଅଧିକ ଗବେଷଣା କରୁ କରୁ କ୍ରୁକ୍‌ସ, ଟମ୍‌ସନ, ମିଲିକାନ ପ୍ରଭୃତି ବୈଜ୍ଞାନିକମାନେ ଊନବିଂଶ ଶତାବ୍ଦୀର ଶେଷଭାଗ ବେଳକୁ ଆହୁରି ଚାଞ୍ଚଲ୍ୟକର ଏକ ତଥ୍ୟ ପ୍ରକାଶ କଲେ । ସେମାନେ ପରମାଣୁ ଅପେକ୍ଷା ବହୁ ଗୁଣରେ ସୂକ୍ଷ୍ମତର ଆଉ ଏକ କଣିକାର ସନ୍ଧାନ ଦେଲେ । ଏଇ ସୂକ୍ଷ୍ମ କଣିକାର ନାମ ଇଲେକ୍‌ଟ୍ରନ । ପରମାଣୁବାଦ ତଥ୍ୟ ଏହା ଫଳରେ ଯଥେଷ୍ଟ ବିକାଶ ଲାଭ କଲା ।

କିନ୍ତୁ ବିଜ୍ଞାନ କ୍ଷେତ୍ରରେ, ବିଶେଷକରି ଏହି ପରମାଣୁ ଗବେଷଣା କ୍ଷେତ୍ରରେ ବିସ୍ମୟର ଯେପରି ଅନ୍ତ ନାହିଁ । କାରଣ ଇଲେକ୍‌ଟ୍ରନ ଆବିଷ୍କାରର ମାତ୍ର କେତୋଟି ବର୍ଷପରେ ୧୮୯୬ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଦେଶର ଜଣେ ସୁନାମଧନ୍ୟ ବିଜ୍ଞାନବିତ୍ ବେକାରେଲ୍ ପୃଥିବୀକୁ ଅନ୍ୟ ଏକ ଅଭିନବ ଆବିଷ୍କାରର ସନ୍ଧାନ ଦେଲେ । ଏହି

ଆବିଷ୍କାର ହେଲା ସ୍ୱତନିୟମର ତେଜଷ୍କ୍ରିୟତା ସମ୍ପର୍କରେ । ସ୍ୱତନିୟମର ପ୍ରତି ମୁହୂର୍ତ୍ତରେ ବିଚ୍ଛୁରିତ ହେଉଥିବା ଏକ ରହସ୍ୟମୟ ଆଲୋକରଶ୍ମିର ବିବରଣୀ ବେକାରେଲ ପ୍ରଥମେ ଉପସ୍ଥାପିତ କଲେ ।

କିନ୍ତୁ ଏହାର ଠିକ୍ ଦୁଇବର୍ଷ ପରେ ୧୮୯୮ ମସିହାରେ ପିଏର କ୍ୟୁରୀ ଏବଂ ମାଦାମ ମେରୀ କ୍ୟୁରୀ ଯେଉଁ ଆବିଷ୍କାର କଲେ ତାହା ଆହୁରି ଅଧିକ ପରିମାଣରେ ବିସ୍ମୟକର । ସେମାନେ ଏପରି ଏକ ବସ୍ତୁର ଅସ୍ତିତ୍ୱ କଥା ବିଶ୍ୱ ସମକ୍ଷରେ ଘୋଷଣା କଲେ, ଯାହାର ତେଜଷ୍କ୍ରିୟତାର ଶକ୍ତି ସ୍ୱତନିୟମ ଅପେକ୍ଷା ଅନେକ ଗୁଣରେ ଅଧିକ ।

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପିଏର କ୍ୟୁରୀ ଏବଂ ମାଦାମ ମେରୀ କ୍ୟୁରୀ ଲଣ୍ଡନ ଯାଇ ସେମାନଙ୍କର ଏହି ଅଭିନବ ଆବିଷ୍କାର ବାର୍ତ୍ତା ପ୍ରଚାର କଲେ । ସେତେବେଳକୁ ସ୍ୱାମୀ ସ୍ତ୍ରୀ ଯୁଗ୍ମ ଭାବରେ ପୃଥିବୀର ସର୍ବଶ୍ରେଷ୍ଠ ପୁରସ୍କାର "ନୋବେଲ ପୁରସ୍କାର"ର ଅଧିକାରୀ ହୋଇସାରିଲେଣି ।

ଲଣ୍ଡନର ପ୍ରସିଦ୍ଧ ରୟାଲ ଇନ୍ଷ୍ଟିଚ୍ୟୁଟରେ କ୍ୟୁରୀ ଦମ୍ପତି ସେମାନଙ୍କର ଆବିଷ୍କାର ତଥ୍ୟ ପ୍ରତ୍ୟକ୍ଷ ଭାବରେ ସର୍ବସାଧାରଣଙ୍କ ଆଗରେ ପରୀକ୍ଷାକରି ଦେଖାଇଦେଲେ । ଏହି 'ରେଡ଼ିୟମ'ର ଆବିଷ୍କାରରୁ ଆଜିର ବହୁଳ ପ୍ରଚଳିତ ଶବ୍ଦ 'ରେଡ଼ିଓ ଓ ଟିଭିଟି' ପ୍ରଚଳିତ ହେଲା ।

୧୯୦୫ ଖ୍ରୀଷ୍ଟାବ୍ଦରେ ଚଳିତ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ ଏହି ବୈଜ୍ଞାନିକ ଧାରାରେ ଅନ୍ୟ ଏକ ନୂତନ ଅଧ୍ୟାୟ ସଂଯୋଗ କଲେ । ସେ ଏକ ଗାଣିତିକ ସୂତ୍ର ମାଧ୍ୟମରେ ବସ୍ତୁ ଏବଂ ଶକ୍ତି ଭିତରେ ଥିବା ପାରସ୍ପରିକ ସମ୍ପର୍କର ସୂତ୍ର ଦେଖାଇଦେବାକୁ ସକ୍ଷମ ହେଲେ ।

ଏହାପରେ ଆସିଲା ୧୯୧୧ ମସିହାରେ ବୈଜ୍ଞାନିକ ରଦରଫୋର୍ଡ଼ଙ୍କର 'ନିଉକ୍ଲିୟାସ' ବା 'ପରମାଣୁ କେନ୍ଦ୍ରକ' ସମ୍ପର୍କରେ ଉଲ୍ଲେଖଯୋଗ୍ୟ ଘୋଷଣା । ସେହିବର୍ଷ ଉକ୍ତ ବୈଜ୍ଞାନିକ କୃତ୍ରିମ ଉପାୟ ଅବଲମ୍ବନ ପୂର୍ବକ 'କେନ୍ଦ୍ରକ'ର ବିଦାରଣ କରିବାକୁ ସକ୍ଷମ ହେଲେ । ଏକାନ୍ତ ଲଘୁ 'ପରମାଣୁ କେନ୍ଦ୍ରିକ (ନିଉକ୍ଲିୟାସ)କୁ ଆଲଫା କଣାଦ୍ୱାରା ଆଘାତ କରାଗଲା । ଏହି ଆଘାତର ଫଳସ୍ୱରୂପ 'ପରମାଣୁ କେନ୍ଦ୍ରକ' ବିଧ୍ୱସ୍ତ ହୋଇଗଲା ଏବଂ ତାହା ଭିତରୁ ପ୍ରୋଟନ କଣିକା ବାହାରି ଆସିଲା ।

ଏହି ପରୀକ୍ଷା ହେବାର ଠିକ୍ ଦୁଇବର୍ଷ ପରେ ଡେନମାର୍କ ଦେଶର ଜଣେ ବିଖ୍ୟାତ ବିଜ୍ଞାନ ବିଶାରଦ ନୀଲ୍‌ବୋର ଆଉ ଏକ ନୂତନ ମତବାଦ ଘୋଷଣା କଲେ । ସେ ଦେଖାଇଦେଲେ ଯେ, ପରମାଣୁ କେନ୍ଦ୍ରକ ବା ନିଉକ୍ଲିୟାସର ଚତୁର୍ଦ୍ଦିଗରେ ଦଳବଦ୍ଧ ଭାବେ ଘୂରିବୁଲୁଛି ଇଲେକ୍ଟ୍ରନ । ଏହାର କିଛି ବର୍ଷ ପରେ ୧୯୩୦ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକ ବୋଥେ ଏବଂ 'ବେକାର' ପରମାଣୁ ତଥ୍ୟ ଉପରେ ଅନ୍ୟ ଏକ ଦିଗରୁ ନୂତନ ଆଲୋକପାତ କଲେ । ତେଜଷ୍କ୍ରିୟ ପଲୋନିୟମରୁ ଯେଉଁସବୁ ଆଲଫା କଣିକା ନିର୍ଗତ ହେଉଥାଏ, ତାହାକୁ କାର୍ଯ୍ୟରେ ପ୍ରୟୋଗ କରିବାର ଏକ

ସୁଚିନ୍ତିତ ପନ୍ଥାର ସନ୍ଧାନ ସେମାନେ ଦେଲେ ଏବଂ ତାହା କାର୍ଯ୍ୟକାରୀ ମଧ୍ୟ ହେଲା । ଆଲଫା କଣିକା ସବୁକୁ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରାଗଲା । ସେମାନେ ଦେଖାଇଲେ ଯେ, ବୋରଣ ବା 'ବେରିଲିୟମ' ଭଳି ହାଲୁକା ଧାତୁ ସମୂହର 'କେନ୍ଦ୍ରକ'ଗୁଡ଼ିକ ଉପରେ ଯଦି ଏହି ଆଲଫା କଣିକା ସମୂହ ସାହାଯ୍ୟରେ ଆଘାତ ସୃଷ୍ଟି କରାହୁଏ, ତାହାହେଲେ ଗୋଟିଏ ଅତିଶୟ ଶକ୍ତିଶାଳୀ ରଶ୍ମିର ଆବିର୍ଭାବ ଘଟିବା ସମ୍ଭବପର ହୋଇପାରେ । ଏହି ରଶ୍ମିରେଖାର ଭେଦନ-କ୍ଷମତା ପୂର୍ବକଥିତ ରଶ୍ମି ଅପେକ୍ଷା ବହୁ ଗୁଣରେ ଅଧିକ ଶକ୍ତିଶାଳୀ ବୋଲି ଏହି ବୈଜ୍ଞାନିକ ଦ୍ୱୟ ପ୍ରମାଣକରି ଦେଖାଇ ଦେଲେ । ପୃଥିବୀବ୍ୟାପୀ ସମସ୍ତ ଉନ୍ନତ ଦେଶମାନଙ୍କରେ ଏହିସବୁ ଚମକପ୍ରଦ ପରୀକ୍ଷା ନିରୀକ୍ଷା ଏବଂ ନୂତନ ଜ୍ଞାନ ସଂଗ୍ରହ ସକାଶେ ଅନୁସନ୍ଧାନ ଚାଲିଥିଲା ସମୟରେ ସେସବୁ ଗଭୀର ମନୋନିବେଶ ସହକାରେ ଜୋଲିଏଟ୍ କ୍ୟୁରୀ ଲକ୍ଷ୍ୟ କରୁଥିଲେ ।

ବୈଜ୍ଞାନିକ ବୋଥେ ଏବଂ ବେକାରଙ୍କ ଆବିଷ୍କୃତ ଉପରୋକ୍ତ ରଶ୍ମିର ଶକ୍ତି ସମ୍ପର୍କରେ ଜୋଲିଏଟ୍ କ୍ୟୁରୀ ଅତିଶୟ ଆଗ୍ରହାନ୍ୱିତ ହୋଇପଡ଼ିଲେ । ସେହି ଦିନରୁ ସେ ଗଭୀର ଅଭିନିବେଶ ସହକାରେ ସେହି ରଶ୍ମି ସଂକ୍ରାନ୍ତୀୟ ଯାବତୀୟ ତଥ୍ୟ ସଂଗ୍ରହ କରି ନିଜର ବିଜ୍ଞାନାଗାର ମଧ୍ୟରେ ସ୍ତ୍ରୀ ଆଇରିନ୍ କ୍ୟୁରୀଙ୍କ ସାହାଯ୍ୟରେ ଗବେଷଣା କାର୍ଯ୍ୟ ପରିଚାଳନା କଲେ ।

ଏହି ଦମ୍ପତ୍ତି ମନୀଷୀଙ୍କର ନୀରବ ଅନୁସନ୍ଧାନ ଫଳରେ ଯେଉଁ ନୂତନ ତଥ୍ୟ ପ୍ରକାଶ ପାଇଲା, ତାହା କିନ୍ତୁ ବୈଜ୍ଞାନିକ ମହଲରେ ଚହଳ ପକାଇଦେଲା । ଜୋଲିଏଟ୍ କ୍ୟୁରୀ ଦେଖାଇଦେଲେ ଯେ, ଉପରୋକ୍ତ ରଶ୍ମିର ତୀବ୍ରତା କେତେବେଳେ ହେଲେ ସମାନତା ବଜାୟ ରଖିପାରେ ନାହିଁ । ପଦାର୍ଥର ବିଭିନ୍ନତା ଏହି ରଶ୍ମିରେଖାର ବିଚ୍ଛୁରଣକୁ ମନ୍ଦୀଭୂତକରି ଦେଇପାରେ ଅଥବା ଉଜ୍ଜୀବିତ ମଧ୍ୟ କରିଦେଇପାରେ । ଜୋଲିଏଟ କ୍ୟୁରୀଙ୍କର ଏହି ତଥ୍ୟ ଅବଲମ୍ବନ କରିବା ଫଳରେ ବୈଜ୍ଞାନିକମାନେ ଦେଖିପାରିଲେ ଯେ, ପ୍ୟାରଫିନ୍ ଉଆକ୍ସ ଉପରେ ଏହି ରଶ୍ମିରେଖା ପ୍ରତିଫଳିତ କରି ସେମାନେ ପ୍ରଚୁର ପରିମାଣ ପ୍ରୋଟିନ୍ କଣିକା ପାଇପାରୁଛନ୍ତି । ଦେଖାଗଲା ଯେ, ବୈଜ୍ଞାନିକ ରାଦାରଫୋର୍ଡଙ୍କ ପରୀକ୍ଷାରେ ମିଳିପାରୁଥିବା ପ୍ରୋଟିନ୍ କଣିକା ଅପେକ୍ଷା ଏଇ ନୂତନ ପରୀକ୍ଷାରେ ମିଳିପାରୁଥିବା ପ୍ରୋଟିନ କଣିକାର ସଂଖ୍ୟା ବହୁ ପରିମାଣରେ ଅଧିକ ; କିନ୍ତୁ ଏହି ରଶ୍ମି ସଂକ୍ରାନ୍ତରେ ପୃଥିବୀବ୍ୟାପୀ ବୈଜ୍ଞାନିକ ମହଲରେ ଏତେ ବେଶୀ ଆଲୋଡ଼ନ ଚାଲିଥିଲେ ମଧ୍ୟ ଏବଂ ଏହି ରଶ୍ମିକୁ ପରୀକ୍ଷାର କେନ୍ଦ୍ରରୂପେ ଗ୍ରହଣକରି ଆହୁରି କେତେ ନୂଆ ନୂଆ ବୈଜ୍ଞାନିକ ତଥ୍ୟର ସନ୍ଧାନ ମିଳୁଥିଲେ ମଧ୍ୟ ଏହି ରଶ୍ମିର ପ୍ରକୃତ ସ୍ୱରୂପ କ'ଣ, ସେ ବିଷୟରେ ବୈଜ୍ଞାନିକମାନେ ସ୍ଥିର ନିଶ୍ଚିତ ହୋଇପାରି ନଥିଲେ ; କିନ୍ତୁ ଏହା ନେଇ ପୁଙ୍ଖାନୁପୁଙ୍ଖ ପରୀକ୍ଷା ନିରୀକ୍ଷାର ଅନ୍ତ ନଥିଲା, କେତେକଜଣ ବୈଜ୍ଞାନିକ ସଠିକ୍ ସିଦ୍ଧାନ୍ତରେ ଉପନୀତ ହୋଇପାରି ନଥିଲେ ମଧ୍ୟ ଏହି ରଶ୍ମିରେଖାକୁ 'ଗାମା' ରଶ୍ମି ବୋଲି ଧରିନେଉଥିଲେ ; କିନ୍ତୁ ସେମାନଙ୍କର ଏ ଭ୍ରାନ୍ତି ଯଥାଶୀଘ୍ର ଦୂରୀଭୂତ ହେଲା ଏବଂ ଖୁବ୍ ଶୀଘ୍ର ଅନ୍ୟମାନେ ମଧ୍ୟ ସନ୍ଦେହରୁ ମୁକ୍ତହେଲେ ।

ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କ ନିର୍ଦ୍ଦେଶିତ ପ୍ରଣାଳୀରେ ଏହି ରଶ୍ମି ଉପରେ ଗଭୀର ଅନୁଶୀଳନ କରୁଥିଲେ ଆଉ ଜଣେ ବୈଜ୍ଞାନିକ । ତାଙ୍କର ନାମ ହେଉଛି, ଡକ୍ଟର ଜେମ୍ସ ଚ୍ୟାଡ୍ ଉଇକ । ସେ ଜାଣିଥିଲେ ଯେ, ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କ

ନିର୍ଭୁଲ ପ୍ରଣାଳୀ ଅନୁସରଣକରି ସେ ନିଶ୍ଚୟ ଦିନେ ନା ଦିନେ ଏହି ରଶ୍ମିରେଖାର ରହସ୍ୟଭେଦ କରିପାରିବେ । ଶେଷ ପର୍ଯ୍ୟନ୍ତ ତାଙ୍କର ସାଧନା ସଫଳ ହେଲା ଏବଂ ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ସେହି ରଶ୍ମିରେଖାଟି ଆଉକିଛି ନୁହେଁ, ଏକ ବିଶେଷ ପ୍ରକାର ତଡ଼ିତ୍‌ଗୁଣ ବର୍ଜିତ କଣିକା ପ୍ରବାହର ନାମ ହିଁ ହେଲା 'ନିଉଟ୍ରନ' । ବୈଜ୍ଞାନିକର ଅଭିଧାନରେ ଆଜି ଏହି 'ନିଉଟ୍ରନ' ଶବ୍ଦର ଗୁରୁତ୍ୱ କେତେ, ସେ କଥା ବଖାଣି ବସିଲେ ସହଜରେ ଶେଷ ହେବାର ନୁହେଁ ।

ସୁତରାଂ କେବଳ ଯେ, କୃତ୍ରିମ ତେଜଷ୍କ୍ରିୟତାର ଆବିଷ୍କର୍ତ୍ତା ହିସାବରେ ଅଧ୍ୟାପକ ଜୋଲିଏଟ୍ କ୍ୟୁରୀ ବିଶ୍ୱବରେଣ୍ୟ ହୋଇପାରିଲେ ତାହା ନୁହେଁ, 'ନିଉଟ୍ରନ'ର ଆବିଷ୍କାର ପଛରେ ତାଙ୍କର ଯେଉଁ ବିପୁଳ ଅବଦାନ ଏବଂ ସେ ଆବିଷ୍କାରର ପଥ ପ୍ରଶସ୍ତ କରିବାପାଇଁ ଯେତେ ବୈଜ୍ଞାନିକ ଯେତେ ପରୀକ୍ଷା ନିରୀକ୍ଷା କରିଥିଲେ, ସେଥିରେ ତାଙ୍କର ବିଜ୍ଞ ଏବଂ ଉଦାର ନେତୃତ୍ୱ କଥା ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କଲେ । ସାରା ପୃଥିବୀର ବିଜ୍ଞାନପ୍ରେମୀମାନଙ୍କର ଶ୍ରଦ୍ଧା ଓ ସ୍ନେହ ଅଧ୍ୟାପକ ଜୋଲିଏଟ୍ କ୍ୟୁରୀ ଏବଂ ତାଙ୍କର ସହଧର୍ମିଣୀ ତଥା ସହକର୍ମିଣୀ ଡଃ ଆଇରିନ୍ ଜୋଲିଏଟଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା ।

'ନିଉଟ୍ରନ'ର ଆବିଷ୍କାର ଏବଂ ପ୍ରତିଷ୍ଠା ପରମାଣୁ ବିଜ୍ଞାନ କ୍ଷେତ୍ରରେ ବହୁ ନିତ୍ୟ ନୂତନ ପରୀକ୍ଷାର ସୁଯୋଗ କରିଦେଲା ଏବଂ ତା ସଙ୍ଗେ ସଙ୍ଗେ ନୂଆ ନୂଆ ସମ୍ଭାବନାର ଜନ୍ମ ମଧ୍ୟ ଦେଲା । କୃତ୍ରିମ ଉପାୟ ଅବଲମ୍ବନକରି ପରମାଣୁକୁ ବିଚୂର୍ଣ୍ଣ କରିବାର ଯେଉଁ ପନ୍ଥା ଏହା ପୂର୍ବରୁ ଅନୁସରଣ କରାଯାଉଥିଲା, ତାହା ଥିଲା ଏକ ସମୟସାପେକ୍ଷ ପ୍ରକ୍ରିୟା ; କିନ୍ତୁ ନିଉଟ୍ରନ ସାହାଯ୍ୟରେ ବର୍ତ୍ତମାନ ସେ କାର୍ଯ୍ୟ ବହୁ ପରିମାଣରେ ସରଳୀକୃତ ହୋଇପଡ଼ିଲା । ନିଉଟ୍ରନ ତଡ଼ିତଗୁଣ ବର୍ଜିତ ବା ବିଦ୍ୟୁତ୍ ନିରପେକ୍ଷ କଣିକା ହୋଇଥିବାଯୋଗୁଁ 'ପରମାଣୁ କେନ୍ଦ୍ରିକ' ତାହା ଉପରେ କୌଣସି ପ୍ରକାର ବୈଦ୍ୟୁତିକ ପ୍ରଭାବ ବିସ୍ତାର କରିବାକୁ ସକ୍ଷମ ହୁଏ ନାହିଁ । ସୁତରାଂ ତାହା ବିନ୍ଦୁମାତ୍ର ପ୍ରତିବନ୍ଧକ ପ୍ରାପ୍ତ ନହେବା ଫଳରେ ସିଧାସଳଖ ଯାଇ 'ପରମାଣୁ କେନ୍ଦ୍ରିକ' ଉପରେ ଆଘାତ ସୃଷ୍ଟି କରେ ଏବଂ କେନ୍ଦ୍ରକକୁ ବିଚୂର୍ଣ୍ଣ କରିଦିଏ ।

୧୯୩୫ ଖ୍ରୀଷ୍ଟାବ୍ଦରେ ସମସ୍ତେ ଯାହା ପ୍ରତ୍ୟାଶା କରିଥିଲେ, ତାହାହିଁ ଘଟିଲା । ଅଧ୍ୟାପକ ଜୋଲିଏଟ୍ କ୍ୟୁରୀ ଏବଂ ତାଙ୍କ ସ୍ତ୍ରୀ ଡକ୍ଟର ଆଇରିନ୍ କ୍ୟୁରୀ ମିଳିତ ଭାବରେ ଅଭୂତପୂର୍ବ ଦକ୍ଷତାର ପରିଚୟ ଦେଇ କୃତ୍ରିମ ତେଜଷ୍କ୍ରିୟ ଧାତୁ ଉତ୍ପନ୍ନ କରିଥିବା କାରଣରୁ ରସାୟନ ଶାସ୍ତ୍ରର ନୋବେଲ ପୁରସ୍କାର ପ୍ରାପ୍ତହେଲେ । ଗୋଟିଏ ପରିବାର ଉପର୍ଯ୍ୟୁପରି ତିନିଥର ଏଇ ଦୁର୍ଲଭ ସମ୍ମାନ ପ୍ରାପ୍ତହୋଇ ନୋବେଲ ପୁରସ୍କାରର ଇତିହାସରେ ଏକ ଏକାନ୍ତ ବିସ୍ମୟକର ଐତିହ୍ୟର ସୃଷ୍ଟିକଲେ । ସାରା-ପୃଥିବୀ ସେଦିନ ଏଇ ଆଦର୍ଶ ଦମ୍ପତିଙ୍କୁ ଅଭିନନ୍ଦନ ଜଣାଇଲା ।

ନୋବେଲ ପୁରସ୍କାର ସାଧାରଣତଃ ବିଭିନ୍ନ କ୍ଷେତ୍ରରେ ଚୂଡ଼ାନ୍ତ ଦକ୍ଷତାର ପରାକାଷ୍ଠା ପ୍ରଦର୍ଶନ କରିସାରିଥିବା ବ୍ୟକ୍ତିମାନଙ୍କୁ ହିଁ ମିଳିଥାଏ । ନୋବେଲ ପୁରସ୍କାର ପାଇସାରିବା ପରେ ନିଜ ନିଜର କ୍ଷେତ୍ରରେ ପୁରସ୍କାର ପ୍ରାପ୍ତ ମନୀଷୀମାନେ ଆହୁରି ଅଧିକ ବିସ୍ମୟକର କୃତିତ୍ୱ ଦେଖାଇବାର ଉଦାହରଣ ବିରଳ ହେବା ସ୍ୱାଭାବିକ ।

କିନ୍ତୁ ବୈଜ୍ଞାନିକ ଜୋଲିଏଟ୍ କ୍ୟୁରୀ ଏହି ସର୍ବଶ୍ରେଷ୍ଠ ସମ୍ମାନର ଅଧିକାରୀ ହୋଇ-ପାରିଥିଲେ ମଧ୍ୟ ବିଜ୍ଞାନ କ୍ଷେତ୍ରରେ ନିଜର କର୍ତ୍ତବ୍ୟ ଶେଷ ହୋଇଯାଇଛି ବୋଲି କେବେହେଲେ ମନେ କରି ନଥିଲେ । ନୋବେଲ ପୁରସ୍କାର ପାଇସାରିବା ପରେ ପୃଥିବୀର କେତେକ ବଡ଼ ବଡ଼ ଦେଶମାନଙ୍କରେ ନିଜର ମୂଲ୍ୟବାନ ଆବିଷ୍କାରର ତତ୍ତ୍ୱ ଅନ୍ୟମାନଙ୍କ ଆଗରେ ବିଶ୍ଳେଷଣ କରିସାରି ସେ ପୁଣି ନିଜର ବିଜ୍ଞାନାଗାର ଭିତରକୁ ଫେରିଆସିଲେ । ଏଥର ଯେପରି ତାଙ୍କର ହୃଦୟରେ ଆହୁରି ନୂତନ ଉଦ୍ଦୀପନା, ଆଖିରେ ଯେପରି ଆହୁରି ଶିକ୍ଷାର୍ଥୀ ସୁଲଭ ଅନୁସନ୍ଧିତ୍ସା ।

ପୁଣି ଗୁଳିକ ଅବିରାମ ଗବେଷଣା, ଅଥଚ ଅହୋରାତ୍ର ବିଜ୍ଞାନାଗାର ଭିତରର ଜଟିଳ ସମସ୍ୟା ସମୂହ ଏବଂ ସେ ସବୁର ସମାଧାନ ଦିଗରେ ଗଭୀର ମନୋନିବେଶ-କରି ରହୁଥିଲେ ମଧ୍ୟ ନିଜ ଦେଶର ଅବସ୍ଥା ଏବଂ ଆନ୍ତର୍ଜାତିକ ଘଟଣା ସବୁରେ ଅଧ୍ୟାପକ ଜୋଲିଏଟ୍ କିଛି ଅଳ୍ପଅଂଶ ଗ୍ରହଣ କରୁନଥିଲେ । ସାଧାରଣ ନାଗରିକ ଜୀବନରେ ତାଙ୍କର ଏଇ ଭାଗ ଗ୍ରହଣ ଜନସାଧାରଣଙ୍କୁ ବିସ୍ମୟରେ ଅଭିଭୂତ କରି-ଦେଉଥିଲା ।

ଏଥର ଜୋଲିଏଟ୍ କ୍ୟୁରୀଙ୍କର ସବୁଠାରୁ ବଡ଼ କାର୍ଯ୍ୟ କଥା ଉଲ୍ଲେଖ କରିବା ଆବଶ୍ୟକ । ପାରମାଣବିକ ଶକ୍ତିକୁ ଶାନ୍ତିପୂର୍ଣ୍ଣ କାର୍ଯ୍ୟକଳାପରେ ପ୍ରୟୋଗ କଲେ । ତାହା ଯେ ସମଗ୍ର ପୃଥିବୀର ଭାଗ୍ୟ ବଦଳାଇ ଦେବାକୁ ସକ୍ଷମ ହେବ, ଏକଥା ଆଜି ଜଗତର ବୈଜ୍ଞାନିକମାନଙ୍କଠାରୁ ଆରମ୍ଭକରି ରାଜନୀତିବିଦ୍‌ମାନଙ୍କ ପର୍ଯ୍ୟନ୍ତ ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି । କିନ୍ତୁ ପାରମାଣବିକ ଶକ୍ତିର ଏଇ ଯୁଗାନ୍ତକାରୀ ଶାନ୍ତିପୂର୍ଣ୍ଣ ପ୍ରୟୋଗ କଥା କେହି କଳ୍ପନା ବି କରିପାରନ୍ତେ ନାହିଁ, ଯଦି ଅଧ୍ୟାପକ ଜୋଲିଏଟ୍ କ୍ୟୁରୀ ତାଙ୍କ ଜୀବନର ସର୍ବଶ୍ରେଷ୍ଠ କାର୍ଯ୍ୟରୂପେ 'ଚେନ-ରିଆକ୍ସନ୍,' ବା ଅବିରାମ ପାରମ୍ପରିକ ପ୍ରକ୍ରିୟାର ଆବିଷ୍କାର ଯୋଗୁଁ ଆଜି ପରମାଣୁ ତତ୍ତ୍ୱ ସବୁ ବଡ଼ ବଡ଼ ବସ୍ତୁବିଦ୍‌ମାନଙ୍କର ଆଖିର ପିତୁଳା ହୋଇଉଠିଛି । ଏ ପ୍ରକ୍ରିୟାର ସାରାଂଶ ସଂକ୍ଷେପରେ ଏହିପରି କୁହାଯାଇପାରେ ।

ୟୁରେନିୟମ କେନ୍ଦ୍ରକ ଉପରେ ଯାଇ ଯଦି ନିଉଟ୍ରନ୍ ଆଘାତ କରେ, ତେବେ ସେହି ଆଘାତ ଫଳରେ କେନ୍ଦ୍ରକଟି ଭାଙ୍ଗିଯିବ ଏବଂ ଦୁଇଭାଗରେ ବିଭକ୍ତ ହୋଇ-ପଡ଼ିବ । ଏହି ଦ୍ୱିଧା ବିଭକ୍ତ କେନ୍ଦ୍ରକର ଗୋଟିଏ ଭାଗ ହେବ ଲଘୁ ବେରିୟମ, କେନ୍ଦ୍ରକ, ଅପର ଭାଗଟି ହେବ କ୍ରିପ୍ଟନ୍ କେନ୍ଦ୍ରକ । ଏହି ଭାଙ୍ଗିଯିବା ଫଳରେ ସଙ୍ଗେ ସଙ୍ଗେ କେବଳ ଯେ ବିପୁଳ ପରିମାଣ ଶକ୍ତିର ଉଦ୍‌ଗାରଣ ହେବ ତାହାନୁହେଁ । ଇଉରେନିୟମ କେନ୍ଦ୍ରକ ମଧ୍ୟରେ ଆବଦ୍ଧ ରହିଥିବା ତିନିଗୋଟି ନୂତନ 'ନିଉଟ୍ରନ୍' ମଧ୍ୟ ଏହାଫଳରେ ମୁକ୍ତିଲାଭ କରି ବାହାରି ଆସିବେ । ଏହି ସଦ୍ୟମୁକ୍ତ ତିନିଗୋଟି ନିଉଟ୍ରନ ବର୍ତ୍ତମାନ ନିଜର ପରାକାଷ୍ଠା ଦେଖାଇବେ । ସେମାନେ ପୁଣି 'କେନ୍ଦ୍ରକ'କୁ ବିଚୂର୍ଣ୍ଣ କରିବାକୁ ଲାଗିପଡ଼ିବେ । ସେମାନଙ୍କ ଆଘାତରେ ପୁଣି ମୁକ୍ତପାଇ ବହିର୍ଗତ ହେବ ନୂତନର ଆଉ କେତେଗୋଟି ନିଉଟ୍ରନ ।

ଏହିପରି ନିୟମ ଅନୁଯାୟୀ ମୁକ୍ତି ପ୍ରାପ୍ତ ନିଉଟ୍ରନର ସଂଖ୍ୟା ଏକଦିଗରେ ବଢ଼ି ବଢ଼ି ଚାଲିବ ଏବଂ ଅନ୍ୟଦିଗରେ ଏକ ସମୟରେ କେନ୍ଦ୍ରକ ମଧ୍ୟ ଅଧିକରୁ

ଅଧିକ ବିବୃଣ୍ଣ ହେ'ଇଯିବ । ଏହି ଦୁଇଟି ଘଟଣା ଘଟୁଥିବା ସଙ୍ଗେ ସଙ୍ଗେ ଆଉ ଏକ ତୃତୀୟ ଘଟଣା ମଧ୍ୟ ଘଟିଯାଉଥିବା ପ୍ରତିଥର କେନ୍ଦ୍ରକ ଚୂର୍ଣ୍ଣୀଭୂତ ହେଉଥିବା ସଙ୍ଗେ ସଙ୍ଗେ କେନ୍ଦ୍ରକର ବସ୍ତୁକଣାର କିୟଦଂଶ କ୍ଷୟିତହୋଇ ତୁଲ୍ୟ ପରିମାଣ ତେଜ ଶକ୍ତିର ଆତ୍ମପ୍ରକାଶ କରୁଥିବ ।

ପଦାର୍ଥ ଭିତରେ ଯଦି କୌଣସି ପ୍ରକାରେ ଥରେ ଚେନ୍ ରିଆକ୍ସନ୍ ବା ଅବିରାମ-ପ୍ରକ୍ରିୟାଟି ଆରମ୍ଭ କରିଦିଆଯାଇପାରବ, ତାହାହେଲେ ଦ୍ରୁତ ପ୍ରଣୋଦିତ ଭାବରେ ବସ୍ତୁକଣା ଶକ୍ତିରୁ ରୂପାନ୍ତରିତ ହୋଇଯାଉଥିବ ଏବଂ ଏହି ରୂପାନ୍ତର ବଢ଼ି ବଢ଼ି ଚାଲିବ ।

ଏହି ଚେନ-ରିଆକ୍ସନ୍‌ର ଆବିଷ୍କାର ବୈଜ୍ଞାନିକମାନଙ୍କ ଆଗରେ ପାରମାଣବିକ ଶକ୍ତିର ପୁଞ୍ଜିଭୂତ ରହସ୍ୟର ଦ୍ୱାର ଉନ୍ମୁକ୍ତ କରିଦେଲା । ଜଣେ ପ୍ରାବନ୍ଧିକଙ୍କ ଭାଷାରେ କହିବାକୁ ଗଲେ—"ଚେନ୍-ରିଆକ୍ସନ୍‌ର ଆବିଷ୍କାର ବିଜ୍ଞାନବିତ୍‌ମାନଙ୍କ ହାତରେ ଯେପରି ପରମାଣୁ ଶକ୍ତି ଆୟତ୍ତୀକରଣର ଚାବିକାଠି ଆଣିଦେଲା । କଳନା ମଧ୍ୟରେ ଆବଦ୍ଧ ଲୋକ-କଥାର ଦୈତ୍ୟଭଳି ପରମାଣୁ କେନ୍ଦ୍ରକର କାରାଗାରରେ ଆତ୍ମଗୋପନ କରି ରହିଛି ଯେଉଁ ଅପରିସୀମ ଶକ୍ତି, ତାହା ବୈଜ୍ଞାନିକମାନେ ଅନେକ କାଳ ଆଗରୁ ଜାଣିଥିଲେ । କିନ୍ତୁ ସେଇ ଦୈତ୍ୟକୁ ମୁକ୍ତ ଦେବାଟା ବାକିଥିଲା । ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କର ଆବିଷ୍କାର ଯେପରି ସେହି ରୁଦ୍ଧଦ୍ୱାର ଉନ୍ମୁକ୍ତ କରିଦେଲା ।"

ପରମାଣୁ ବିଜ୍ଞାନରେ ଜୋଲିଏଟ କ୍ୟୁରୀଙ୍କର ଏହି ଆବିଷ୍କାର କେତେଦୂର ଗୁରୁତ୍ୱପୂର୍ଣ୍ଣ, ତାହା ବୁଝାଇବା ସହଜ ମଧ୍ୟ ନୁହେଁ । ତେବେ ଏଠାରେ ଏକ ଉଲ୍ଲେଖଯୋଗ୍ୟ ଚିଠିର ବିଷୟବସ୍ତୁ କଥା ଆଲୋଚନା କରଯାଇପାରେ । ଚିଠି ଖଣ୍ଡିକ ଏ ଯୁଗର ଅନ୍ୟତମ ଶ୍ରେଷ୍ଠ ବୈଜ୍ଞାନିକ ଆଲବାର୍ଟ ଆଇନଷ୍ଟାଇନ ଆମେରିକା ଯୁକ୍ତରାଷ୍ଟ୍ରର ତତ୍କାଳୀନ କର୍ଣ୍ଣଧାର ପ୍ରେସିଡେଣ୍ଟ ରୁଜଭେଲ୍‌ଟଙ୍କୁ ଲେଖିଥିଲେ । ସେହି ଚିଠି ଖଣ୍ଡିକରେ ସେ ଜୋଲିଏଟ୍ କ୍ୟୁରୀଙ୍କର ଅମୂଲ୍ୟ ଗବେଷଣା କଥା ଉଲ୍ଲେଖ କରିଥିଲେ ଏବଂ ସଙ୍ଗେ ସଙ୍ଗେ ଆମେରିକାର ଯେଉଁ ବୈଜ୍ଞାନିକମାନେ ସେ ଦିଗରେ ଉଦ୍ୟମ କରୁଥିଲେ, ସେମାନଙ୍କ ବିଷୟ ମଧ୍ୟ ଉଲ୍ଲେଖ କରି ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟଙ୍କୁ ଅନୁରୋଧ କରିଥିଲେ ଯେ, ଆମେରିକାରେ ପରମାଣୁ ତଥ୍ୟର ଗବେଷଣା ପାଇଁ ଯେପରି ଉପଯୁକ୍ତ ବ୍ୟବସ୍ଥା କରିଦିଆଯାଏ ।

ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟ ମହା ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ଅନୁରୋଧ କାର୍ଯ୍ୟରେ ପରିଣତ କରିବାକୁ ବିଳମ୍ବ କରି ନଥିଲେ । ଆମେରିକା ଯୁକ୍ତରାଷ୍ଟ୍ରରେ ଯଥାଶୀଘ୍ର ପାରମାଣବିକ ଶକ୍ତି ଉପରେ ଯଥେଚ୍ଛା ଗବେଷଣା କରିବାପାଇଁ ସେ ଦେଶ ବୈଜ୍ଞାନିକମାନଙ୍କୁ ସର୍ବବିଧ ସୁବିଧା କରି ଦିଆଯାଇଥିଲା । ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କ ଆବିଷ୍କାରରେ ଫ୍ରାନ୍ସ ବା ଅନ୍ୟାନ୍ୟ ଦେଶ ଅପେକ୍ଷା ଶୀଘ୍ର ଆମେରିକା ଯୁକ୍ତରାଷ୍ଟ୍ରର ବୈଜ୍ଞାନିକମାନେ ହିଁ ଅନୁପ୍ରାଣିତ ହୋଇପଡ଼ିଲେ ; କିନ୍ତୁ ସେମାନଙ୍କର ଅଧିକରୁ ଅଧିକ ଗବେଷଣାର ଫଳସ୍ୱରୂପ ପରମାଣୁ ଶକ୍ତି ଯେଉଁ ତଥ୍ୟ ସମୂହ ପ୍ରକାଶ କରିଛି; ଆଜି ପୃଥିବୀର ବଡ଼ ବଡ଼ ଦେଶମାନେ ସେ ତଥ୍ୟକୁ ଶାନ୍ତିପୂର୍ଣ୍ଣ ଉପାୟରେ ପ୍ରୟୋଗ କରିବା ଦିଗରେ ମନୋନିବେଶ କରିବା ଅପେକ୍ଷା ଅଧିକ ମାରଣାସ୍ତ୍ର ପ୍ରସ୍ତୁତ

କରିବା ଦିଗରେ ହିଁ ଜୋର୍ ଦେଉଛନ୍ତି । କିନ୍ତୁ ଯାହାଙ୍କ ଆବିଷ୍କାରରେ ଉଦ୍‌ବୁଦ୍ଧ ବୈଜ୍ଞାନିକମାନେ ଗବେଷଣା କରିବା ଫଳରେ ଏସବୁ ପ୍ରଳୟଙ୍କରୀ ମାରଣାସ୍ତ୍ର ଭୟାବହ ଅସ୍ତିତ୍ୱ ସମ୍ଭବ ହୋଇପାରିଲା, ସେହି ମହାମନୀଷୀ ନିଜେ କହିଛନ୍ତି—

"ସଭ୍ୟତାର ପ୍ରତ୍ୟୁଷରେ ଅନ୍ୟକୁ ଧ୍ୱଂସ କରିବା ସକାଶେ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବା ଦିଗରେ ମନୁଷ୍ୟର ସମସ୍ତ କର୍ମଶକ୍ତି ବ୍ୟୟିତ ହେଉଥିଲା । କିନ୍ତୁ ଆଜି କଣ ଆମ୍ଭେମାନେ ଏପରି ଏକ ଯୁଗରେ ବାସ କରୁନାହୁଁ, ଯେଉଁ ଯୁଗରେ କି ମନୁଷ୍ୟର ସମସ୍ତ ପ୍ରଚେଷ୍ଟା ପ୍ରତିବେଶୀର କଲ୍ୟାଣ ସାଧନାରେ ନିୟୋଜିତ ହେବା ଉଚିତ ।'

କିନ୍ତୁ ଏହି ମହାବାଣୀ ପଢ଼ିଲାବେଳେ ଆଜିକୁ ପ୍ରାୟ ପଚାଶ ବର୍ଷ ତଳେ ଜୋଲିଏଟ୍‌ଙ୍କ ଶ୍ୱଶୁର ଅଧ୍ୟାପକ ପିଏର୍ କ୍ୟୁରୀ ( ମାଦାମ୍ କ୍ୟୁରୀଙ୍କ ସ୍ୱାମୀ ) ତାଙ୍କରି ଆବିଷ୍କୃତ ରେଡିୟମ୍‌ର ଖରାପ ବ୍ୟବହାର ସମ୍ପର୍କରେ ଯେଉଁ ଆଶଙ୍କାମୟ ଭବିଷ୍ୟତ ବାଣୀ ପ୍ରକାଶ କରିଥିଲେ, ତାହାହିଁ ମନେପଡ଼େ । ସେ କହିଥିଲେ—

"ଆଜି ଏକଥା ପୂର୍ବରୁ ଚିନ୍ତା କରିବା ମୋତେ ଦୁରୂହ ନୁହେଁ ଯେ, ଅସାଧୁ ହାତରେ ପଡ଼ି 'ରେଡ଼ିୟମ' ଦିନେ ଅତ୍ୟନ୍ତ ବିପଜ୍ଜନକ ହୋଇପଡ଼ିବ । ସ୍ୱାଭାବିକ ଭାବରେ ମନରେ ଏକ ପ୍ରଶ୍ନ ଉଠୁଛି ଯେ, ପ୍ରକୃତିର ରହସ୍ୟ ସମୂହର ଉନ୍ମୋଚନ ସତ୍ୟ-ସତ୍ୟ ମନୁଷ୍ୟ ପକ୍ଷରେ କଲ୍ୟାଣକର ହେଉଛି କି ନାହିଁ ଏବଂ ଏସବୁର ଯଥାଯଥ ବ୍ୟବହାର କରିଲା ଭଳି ମନୁଷ୍ୟ ଯଥେଷ୍ଟ ଉପଯୁକ୍ତ ହେଲାଣି କି ନାହିଁ । ନଚେତ୍ ( ଉପଯୁକ୍ତ ହୋଇ ନଥିଲେ ) ଏଇସବୁ ଜ୍ଞାନାର୍ଜନ ମନୁଷ୍ୟ ପକ୍ଷରେ କେବଳ କ୍ଷତିକର ଭାବରେ ହିଁ ଦେଖାଦେବ ।"

ଅଧ୍ୟାପକ ପିଏର୍ କ୍ୟୁରୀଙ୍କ ଆଶଙ୍କା ଯେ କେତେ ନିର୍ମମ ସତ୍ୟରେ ପରିଣତ ହୋଇଛି । ୧୯୪୫ ଖ୍ରୀଷ୍ଟାବ୍ଦର ଅଗଷ୍ଟ ମାସରେ ଆଖିପିଛୁଳାକେ ମାତ୍ରକେ ବିଧ୍ୱସ୍ତ ହୋଇ ଯାଇଥିବା 'ହିରୋସୀମା' ଏବଂ 'ନାଗାସାକି'ର ଲକ୍ଷ ଲକ୍ଷ ନିରୀହ ଜନସାଧାରଣଙ୍କ ଆତ୍ମା ତାର ସାକ୍ଷୀ । ସବୁଠୁ ଲଜ୍ଜାର କଥା ହେଉଛି, ଆଜି କେତେକ ଦେଶର କେତେକଣ କ୍ଷମତା ଲିପ୍‌ସୁ ବୈଜ୍ଞାନିକ ନିଜ ନିଜର ସରକାରକୁ ପରମାଣୁ ଶକ୍ତିର ଏଇ ପ୍ରକାର ବିନିଯୋଗ କରିବାପାଇଁ ପ୍ରରୋଚିତ କରୁଛନ୍ତି । କିନ୍ତୁ ଯେଉଁ ମୁଷ୍ଟିମେୟ ବୈଜ୍ଞାନିକଙ୍କ ନାମ ଏଇ କଳଙ୍କର ବହୁ ଊର୍ଦ୍ଧ୍ୱରେ ଚିରକାଳ ଭାସ୍ୱର ହୋଇ ପ୍ରତିଭାତ ହେବ, ସେମାନଙ୍କ ମଧ୍ୟରେ ଅଧ୍ୟାପକ ଫ୍ରେଡ୍‌ରିକ୍ ଜୋଲିଏଟ୍ କ୍ୟୁରୀ ହେଉଛନ୍ତି ଅନ୍ୟତମ ।

ମାରଣାସ୍ତ୍ର ପ୍ରସ୍ତୁତ ପାଇଁ ପରମାଣୁ ଶକ୍ତିର ବିନିଯୋଗ ବିରୁଦ୍ଧରେ ସଦାସର୍ବଦା ଆନ୍ଦୋଳନ କରୁଥିଲେ ବୋଲି ଏବଂ ସେ ଦିଗରେ ନିଜର ପ୍ରତିଭା ପ୍ରୟୋଗ କରୁ ନଥିଲେ ବୋଲି ଅଧ୍ୟାପକ ଜୋଲିଏଟ୍ କ୍ୟୁରୀ କେବଳ ନିଜ ଦେଶର କର୍ଣ୍ଣଧାରମାନଙ୍କ ପାଖରେ ନୁହେଁ, ବିଦେଶରେ ମଧ୍ୟ ଅଳ୍ପ ବହୁତ ନିର୍ଯାତିତ ହୋଇଛନ୍ତି ; କିନ୍ତୁ କୌଣସି ପ୍ରକାର ଭୟ, କୌଣସି ପ୍ରକାର ସରକାରୀ ପ୍ରଲୋଭନ ତାଙ୍କୁ ନିଜର ପବିତ୍ର ନୀତି ମାର୍ଗରୁ କ୍ଷଣିକ ବିଚ୍ୟୁତି ମଧ୍ୟ ଘଟାଇ ପାରି ନାହିଁ ।

ସାଧାରଣତଃ ଦେଖାଯାଏ, ଯେଉଁମାନେ ବଡ଼ ବଡ଼ ବୈଜ୍ଞାନିକ, ସେମାନେ ଜୀବନବ୍ୟାପୀ କେବଳ ନିଜର ଗବେଷଣାଗାର ଏବଂ ତନ୍ମଧ୍ୟରେ ନିଜର ଅଧ୍ୟବସାୟ

ସଂକ୍ରାନ୍ତୀୟ ବ୍ୟାପାରରେ ସଦାସର୍ବଦା ନିମଜ୍ଜିତ ହୋଇ ରହିଥାନ୍ତି । କିନ୍ତୁ ଅଧ୍ୟାପକ ଫ୍ରେଡ଼ାରିକ୍ ଜୋଲିଏଟ୍ କ୍ୟୁରୀ ଥିଲେ ଏହି ନିୟମର ଏକ ବିରଳ ବ୍ୟତିକ୍ରମ । ଅଧ୍ୟାପନା ଏବଂ ଗବେଷଣାରେ ବ୍ୟସ୍ତ ରହି ମଧ୍ୟ ସେ କେବେହେଲେ ଜାତୀୟ ବା ଆନ୍ତର୍ଜାତିକ ଘଟଣାବଳୀ ସହ ନିଜର ସଂଯୋଗ ବଜାୟ ରଖିବାରେ ତ୍ରୁଟି କରୁ ନଥିଲେ । ଦ୍ୱିତୀୟ ମହାସମରରେ ସର୍ବଗ୍ରାସୀ ପଙ୍କ ଭୂମିକାରେ ଯେତେବେଳେ ଫ୍ରାନ୍ସ ଦେଶ ଫାସିଷ୍ଟମାନଙ୍କ ଆକ୍ରମଣ ଆଗରେ ମୁଣ୍ଡ ନୁଆଁଇ ସେମାନଙ୍କ ଦ୍ୱାରା କବଳିତ ହେଲା, ସେତେବେଳେ ସୈନ୍ୟବାହିନୀ ବିନା ଫ୍ରାନ୍ସର ପ୍ରଗତି-କାମୀ ସାଧାରଣ ନାଗରିକମାନେ ଫାସିଷ୍ଟ ବାହିନୀର ପ୍ରବଳ ପ୍ରତିରୋଧ କରିଥିଲେ । ଏହି ଫାସିଷ୍ଟ-ବିରୋଧୀ ଜନବାହିନୀର ଅଗ୍ରଗଣ୍ୟ ନେତା ଥିଲେ ଅଧ୍ୟାପକ ଫ୍ରେଡ଼ାରିକ୍ ଜୋଲିଏଟ୍ କ୍ୟୁରୀ । କେବଳ ସେତିକି ନୁହେଁ, ତାଙ୍କର ଆବିଷ୍କୃତ ବୈଜ୍ଞାନିକ ତଥ୍ୟର ଅମୂଲ୍ୟ ରହସ୍ୟ ଯେପରି ଶତ୍ରୁପକ୍ଷ ହାତରେ ପଡ଼ିନଯାଏ, ସେଥି ସକାଶେ ସେ ନିଜ ଗବେଷଣାଗାରର ବହୁ ଜିନିଷ ନଷ୍ଟ କରିଦେଲେ ଏବଂ ବହୁ ଜିନିଷ ଗୋପନରେ ଅଦ୍ଭୁତ ବୁଦ୍ଧିମତ୍ତାର ପରିଚୟ ଦେଇ ଦେଶାନ୍ତରିତ କରିଦେଲେ ।

ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବା ଉତ୍ତାରୁ ଦେଶର ପୁନର୍ଗଠନ କାର୍ଯ୍ୟରେ ସେ ପୁଣି ମନଦେଲେ । ଏଥର ତାଙ୍କର ମୁଖ୍ୟ କାର୍ଯ୍ୟ ହେଲା—ବୈଜ୍ଞାନିକ ତଥ୍ୟ ସବୁ ଯେପରି ଖରାପ ଉଦ୍ଦେଶ୍ୟ ସାଧିତ ହେବାଲାଗି ପ୍ରଯୁକ୍ତ ନ ହୁଏ, ତାହାରି ବନ୍ଦୋବସ୍ତ କରିବା । ଏ ବିଷୟରେ ସେ ପୃଥିବୀର ବଡ଼ ବଡ଼ ବୈଜ୍ଞାନିକମାନଙ୍କୁ ନିଜର ଯୁକ୍ତି ଏବଂ ମାନବିକତାର ଆବେଦନ ଦେଇ ପ୍ରଭାବିତ କରିବାକୁ ଲାଗିଲେ । ବିଜ୍ଞାନର ଶାନ୍ତିପୂର୍ଣ୍ଣ ପ୍ରୟୋଗ ଲାଗି ଆଜି ଯେଉଁ ପୃଥିବୀବ୍ୟାପୀ ଜନମତ ବହୁ ପରିମାଣରେ ସଙ୍ଗଠିତ ହୋଇପାରିଛି, ସେଥିପାଇଁ ଅଧ୍ୟାପକ କ୍ୟୁରୀ କମ୍ ପରିମାଣରେ ଦାୟୀ ନୁହଁନ୍ତି । ତାଙ୍କର ଅକ୍ଳାନ୍ତ ପରିଶ୍ରମ, ଧୈର୍ଯ୍ୟ, ଅନ୍ୟର ହୃଦୟରେ ଖାଣ୍ଟି ବୈଜ୍ଞାନିକର ଦାୟିତ୍ୱବୋଧ ଜାଗ୍ରତ କରାଇବା ଦିଗରେ ତାଙ୍କର କ୍ଷମତା ଅପରିସୀମ ଥିଲା ।

ତାଙ୍କରି ପରାମର୍ଶରେ, ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବା ଉତ୍ତାରୁ ୧୯୪୫ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସର ବିଶ୍ୱବିଖ୍ୟାତ 'ପରମାଣୁ ଗବେଷଣା କମିଶନ' ପ୍ରତିଷ୍ଠିତ ହେଲା । ବହୁ ବଡ଼ ବଡ଼ ବୈଜ୍ଞାନିକ ଏହି କମିଶନର ଅନ୍ତର୍ଭୁକ୍ତ ହେଲେ ଏବଂ ଏହାର ପୁରୋ-ଭାଗରେ ପରିଚାଳକ ହିସାବରେ ରହିଲେ ଅଧ୍ୟାପକ ଫ୍ରେଡ଼ାରିକ୍ ଜୋଲିଏଟ୍ କ୍ୟୁରୀ ନିଜେ । ୧୯୫୨ ମସିହା ପର୍ଯ୍ୟନ୍ତ ସେ ଏହି ଦାୟିତ୍ୱପୂର୍ଣ୍ଣ ମର୍ଯ୍ୟାଦାରେ ଅଧିଷ୍ଠିତ ରହି-ଥିଲେ । ମୃତ୍ୟୁ ପୂର୍ବରୁ ସେ ବିଶ୍ୱଶାନ୍ତି କାଉନସିଲ୍‌ର ସର୍ବବାଦୀସମ୍ମତ ସଭାପତିରୂପେ ଦୁଇଥର ନିର୍ବାଚିତ ହୋଇଥିଲେ ।

ଦଶବର୍ଷ ତଳେ ୧୯୫୬ ମସିହାରେ ଜୋଲିଏଟ୍‌ଙ୍କ ସହଧର୍ମିଣୀ ଏ ଯୁଗର ଅନ୍ୟ ଜଣେ ଶାନ୍ତିକାମୀ ବିଜ୍ଞାନବିଶାରଦା ଡକ୍ଟର ଆଇରିନ୍ କ୍ୟୁରୀ ଜୋଲିଏଟ୍‌ଙ୍କର ମୃତ୍ୟୁ ହୋଇଯାଇଥିଲା । ୧୯୫୮ରେ ଅଧ୍ୟାପକ ଜୋଲିଏଟ୍ କ୍ୟୁରୀଙ୍କର ମୃତ୍ୟୁ ହୋଇଯାଇଛି । ତାଙ୍କର ମୃତ୍ୟୁ ସାରା ପୃଥିବୀର ଜନସାଧାରଣଙ୍କୁ ମର୍ମାହତ କରିଦେଇଛି । କାରଣ ଆଜି ଯଦି ବୈଜ୍ଞାନିକମାନେ ମାରଣାସ୍ତ୍ର ନିର୍ମାଣ ଦିଗରେ ସେମାନଙ୍କର କ୍ଷମତାର ଅପଚୟ କରିବାକୁ କୁଣ୍ଠିତ ହେଉଥାନ୍ତି, ସେପାଇଁ ମୁଖ୍ୟତଃ ଦାୟୀ ପରଲୋକଗତ ଅଧ୍ୟାପକ କ୍ୟୁରୀଙ୍କର ସତର୍କ ଦୃଷ୍ଟି । ତେଣୁ ତାଙ୍କର ମୃତ୍ୟୁରେ ଏ ଶତାବ୍ଦୀ ତା'ର

ଜଣେ ଶ୍ରେଷ୍ଠ ସନ୍ତାନକୁ କେବଳ ହରାଇ ନାହିଁ, ମାନବିକତାର ଜଣେ ପୂଜାରୀ ଏବଂ ଶାନ୍ତିର ଅଗ୍ରଦୂତଙ୍କୁ ହରାଇଛି ।

## ଫ୍ରେଡ୍ରାରିକ୍ ଜୋଲିଏଟ୍ କ୍ୟୁରୀଙ୍କର ଜୀବନର ସ୍ମରଣୀୟ ଘଟଣା-ପଞ୍ଜି

୧୯୦୦—ପ୍ୟାରିସର ଷୋଡ଼ଶ ଜିଲ୍ଲାରେ ଜଣେ ଦୋକାନଦାରର ପୁତ୍ର ହିସାବରେ ଜନ୍ମଗ୍ରହଣ ।

ବାଲ୍ୟାବସ୍ଥାରେ ପ୍ୟାରିସର ଏକ ବିଜ୍ଞାନ ସ୍କୁଲରେ ଅଧ୍ୟାପକ ଲ୍ୟାଂଭିନ୍‌ଙ୍କ ଅଧୀନରେ ବିଦ୍ୟାଧ୍ୟୟନ । ପରେ ଇଞ୍ଜିନିୟରିଂ ଡିପ୍ଲୋମା ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର ।

୧୯୨୩—ଆମ ଦେଶର ବିଜ୍ଞାନ ଗ୍ରାଜୁଏଟ୍ ଅନୁରୂପ ପରୀକ୍ଷାରେ ଉତ୍ତୀର୍ଣ୍ଣ ଏବଂ ବିଜ୍ଞାନରେ ଉଚ୍ଚଶିକ୍ଷା ନିମନ୍ତେ ପ୍ରସ୍ତୁତି ।

୧୯୨୪—ସାମରିକ କାର୍ଯ୍ୟରୁ ଆସି ମ୍ୟାଡ଼ାମ କ୍ୟୁରୀଙ୍କ ସହକାରୀ ହିସାବରେ ରେଡ଼ିୟମ୍ ଅନୁଷ୍ଠାନରେ ଯୋଗଦାନ ।

୧୯୨୬—ମ୍ୟାଡ଼ାମ କ୍ୟୁରୀଙ୍କ କନ୍ୟା ଆଇରିନ୍ କ୍ୟୁରୀଙ୍କ ସହ ବିବାହ ।

୧୯୨୭—ପ୍ୟାରିସ ବିଦ୍ୟାଳୟରୁ ବିଜ୍ଞାନରେ ଉପାଧି ଗ୍ରହଣ ଏବଂ ଶିଳ୍ପ-ବିଦ୍ୟୁତ୍ ସଂକ୍ରାନ୍ତୀୟ ଏକ ସ୍କୁଲରେ ଶିକ୍ଷକତା ।

୧୯୩୦—ବିଜ୍ଞାନରେ ଡକ୍‌ଟର ଉପାଧି ଲାଭ ।

୧୯୩୨—ରେଡ଼ିୟମ୍ ଅନୁଷ୍ଠାନର ବିଜ୍ଞାନ ବିଭାଗରେ ପ୍ରଦର୍ଶକ ଚାକିରୀ ।

୧୯୩୪—ଆଇରିନ୍ କ୍ୟୁରୀ ଓ ଜୋଲିଏଟ୍ କ୍ୟୁରୀଙ୍କ ଦ୍ୱାରା ମିଳିତଭାବେ କୃତ୍ରିମ ତେଜସ୍କ୍ରିୟତାର ଆବିଷ୍କାର ।

୧୯୩୫—ଆଇରିନ୍‌ଙ୍କ ସହ ମିଳିତଭାବେ ଉପରୋକ୍ତ ଆବିଷ୍କାରପାଇଁ ନୋବେଲ ପୁରସ୍କାର ଲାଭ ।

୧୯୩୬—'ମାନବିକ ଅଧିକାର ସଂସ୍ଥା'ର ସଭ୍ୟ ଏବଂ 'ଧାରା ପ୍ରକ୍ରିୟା' ବା 'ଚେନ୍ ରିଆକ୍‌ସନ'ର ଆବିଷ୍କାର ।

୧୯୩୭–କଲେଜ ଡି: ଫ୍ରାନ୍‌ସର ଅଧ୍ୟାପକ ନିର୍ବାଚିତ । ଆଣବିକ ଗବେଷଣା-ଗାରର ଡାଇରେକ୍‌ଟର । 'ଧାରପ୍ରତିକ୍ରିୟା' ଗବେଷଣା ଯୁଦ୍ଧ.ପ୍ରାରମ୍ଭରେ ସମାପ୍ତ । ବିଭିନ୍ନ ଅନୁଷ୍ଠାନର ସମାହାରରେ ପରିଚାଳିତ ଜାତୀୟ ବିଜ୍ଞାନ ଗବେଷଣା କେନ୍ଦ୍ରର ପ୍ରଥମ ଦଳର ନେତା ।

୧୯୪୦—ନରଓ୍ୱେଜିଆନଙ୍କଠାରୁ ଭାରୀ ଜଳ (ହେଭି ୱାଟର) ଏବଂ ବେଲଜିୟମ ଇଉରେନିୟମର ସଂରକ୍ଷଣ ନିମନ୍ତେ ସଙ୍ଗଠନ । ଜର୍ମାନ ଆକ୍ରମଣ କାଳରେ ନିଜ ନେତୃତ୍ୱରେ ସମସ୍ତ ଗବେଷଣା ସଂକ୍ରାନ୍ତୀୟ କାଗଜପତ୍ର ଓ ଜିନିଷପତ୍ର ଅପସାରଣ ଓ ଶତ୍ରୁ କବଳରୁ ସେ ସବୁର ସୁରକ୍ଷା ।

ଆକ୍ରମଣ ବିରୁଦ୍ଧରେ ପ୍ରତିରୋଧରେ ଅଂଶ ଗ୍ରହଣ ଏବଂ ଇଂଲଣ୍ଡ ପଳାଇଯିବାର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ । ଜାତୀୟ ବିଶ୍ୱବିଦ୍ୟାଳୟ ସଂସ୍ଥାର ଅନ୍ୟତମ ପ୍ରତିଷ୍ଠାତା ଓ ସଭାପତି ।

୧୯୪୩—ବିଜ୍ଞାନ ଏକାଡେମୀ ଓ ଔଷଧ ଏକାଡେମୀର ସଭ୍ୟ ନିର୍ବାଚିତ ।

୧୯୪୪—ଅଧ୍ୟାପକ ଲ୍ୟାଂଭିନ୍‌ଙ୍କ ପଳାୟନ ପାଇଁ ସଙ୍ଗଠନ । ନାତ୍‌ସୀମାନଙ୍କ ବିରୁଦ୍ଧରେ ପ୍ୟାରିସ୍ ବିଦ୍ରୋହରେ ଯୋଗଦାନ । ପ୍ୟାରିସ ମୁକ୍ତିପଥରେ ଜାତୀୟ ବିଜ୍ଞାନ କେନ୍ଦ୍ରର ଡିରେକ୍ଟର ରୂପେ ମନୋନୀତ । ଶାସନ-ବିଧାୟକ ସଭାର ସଭ୍ୟ ।

୧୯୪୬—ନାତ୍‌ସୀବିରୋଧୀ ପ୍ରତିରୋଧ ଦଳର କାର୍ଯ୍ୟକଳାପ ସକାଶେ କମାଣ୍ଡର ଅଫ ଲିଜନ ଅଫ ଅନର' ସମ୍ମାନ ବିଭୂଷିତ । କେନ୍ଦ୍ର ବିଜ୍ଞାନ ଅନୁଷ୍ଠାନରେ ସଭାପତି ପଦରୁ ଇସ୍ତଫା ଏବଂ ପରମାଣୁ ଶକ୍ତିର ହାଇକମିଶନର ହିସାବରେ ମିଳିତ ଜାତିସଙ୍ଘ ପରମାଣୁ ସଂସ୍ଥାରେ ଫ୍ରାନ୍ସର ପ୍ରତିନିଧି ।

ଇଉନେସ୍କୋରେ ମଧ୍ୟ ଫ୍ରାନ୍ସ ତରଫରୁ ପ୍ରତିନିଧିତ୍ୱ । ଫରାସୀ ବିଜ୍ଞାନ ଶ୍ରମିକ ସଙ୍ଘର ସଭାପତି ହିସାବରେ ବିଶ୍ୱବିଜ୍ଞାନ ଶ୍ରମିକ ସଙ୍ଘ ଗଠନରେ ଅଂଶ ଗ୍ରହଣ ଓ ତା'ର ସଭାପତିରୂପେ ନିର୍ବାଚିତ । ଜାତୀୟ ଶିକ୍ଷା ଦପ୍ତରରେ ଅବୈତନିକ ଡିରେକ୍ଟରରୂପେ ମନୋନୀତ । ଫ୍ରାନ୍ସ ଭିଏତନାମ ସଙ୍ଘର ପ୍ରତିଷ୍ଠାତା । ଏଡ଼ିନବର୍ଗ ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟର ଉପାଧି ଲାଭ । ବ୍ରିଟିଶ ରୟାଲ ସୋସାଇଟିର ବୈଦେଶିକ ସଭ୍ୟ । ଓଡନିଶ ଏକାଡେମୀ ଓ ଅର୍ମଷ୍ଟାରଡମ ବିଜ୍ଞାନ ଏକାଡେମୀର ବୈଦେଶିକ ସଭ୍ୟ । ଫରାସୀ ଫିଲିନ ସୋସାଇଟିର ସଭାପତି ନିର୍ବାଚିତ ।

ଏହିଭଳି ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ସହ ଜଡ଼ିତ ଥିଲେ—ତାହା ଏଠାରେ ବର୍ଣ୍ଣନା କଲେ ଏହା ଏକ ସ୍ୱତନ୍ତ୍ର ପୁସ୍ତକରେ ପରିଣତ ହେବ ।



# ବିଶ୍ୱବିଚିତ୍ରା

## ସର୍ବାଧୁନିକ ଯୁଦ୍ଧ ଟ୍ୟାଙ୍କର ନାମ 'ଅର୍ଜୁନ'

ପ୍ରତିରକ୍ଷା ଗବେଷଣା ଓ ଉନ୍ନୟନ ସଂସ୍ଥା ଦ୍ୱାରା ନିର୍ମିତ ଭାରତର ସର୍ବାଧୁନିକ ଓ ଉନ୍ନତ ଯୁଦ୍ଧ ଟ୍ୟାଙ୍କର ନାମ ମହାଭାରତର ପ୍ରସିଦ୍ଧ ଯୋଦ୍ଧା 'ଅର୍ଜୁନ'ଙ୍କ ନାମରେ ନାମିତ କରାଯାଇଛି । ସେନାବାହିନୀ ମୁଖ୍ୟ ଜେନେରାଲ ଏ. ଏସ. ବୈଦ୍ୟ ଏହି ନାମକରଣ କରିଥିଲେ । ପୂଜା ଓ ମନ୍ତ୍ରପାଠ ମଧ୍ୟରେ ଏହାର ନାମକରଣ କରାଯାଇଥିଲା ଗତ ୧୯ ଅପ୍ରେଲ ୧୯୮୫ରେ ।

## ଗୋ-ମାତାଙ୍କ ଭାରତ ଆଗମନ

ଅର୍ଥନୀତିର ଗତି ବିଚିତ୍ର । ୟୁରୋପର ଏକ ଅର୍ଥନୈତିକ ସଂସ୍ଥା ସ୍ଥିର କଲା ଯେ, ସେହି ମହାଦେଶରୁ ଏକ ଲକ୍ଷ ଦୁଧିଆଳି ଗାଈଙ୍କୁ ହାଣ ମୁହଁକୁ ପଠାଇ ଦିଆଯିବ । କାରଣ ତା' ନହେଲେ ଦୁଧର ପରିମାଣ ଏତେ ହୋଇଯିବ ଯେ, ଦୁଧର ମୂଲ୍ୟ କମିଯିବ । ଗୋ-ହତ୍ୟା ପରି ଏମିତି ଏକ ଆୟୋଜନରେ ବିଚଳିତ ହୋଇ କାଞ୍ଚି ପୁରମ୍‌ର ଶଙ୍କରାଚାର୍ଯ୍ୟ ସେଇ ଗୋମାତାମାନଙ୍କୁ ଭାରତ ନେଇ ଆସିବାପାଇଁ ତାମିଲନାଡୁ ସରକାରଙ୍କୁ ଅନୁରୋଧ କଲେ । ଏଣୁ ଖୁବ୍ ଶୀଘ୍ର ତାମିଲନାଡୁ ସରକାର କିଣିନେବାକୁ ରାଜି ହୋଇଥିବା ୨୦,୦୦୦ ଗାଈ ଭାରତ ଭୂମିରେ ପଦାର୍ପଣ କରିବେ ।

## ମୃତ ମାତାର ସନ୍ତାନ ଲାଭ

ଇଂଲଣ୍ଡର ଜଣେ ମହିଳା ମରିଯିବାର ଦୁଇଦିନ ପରେ ଏକ ପୁତ୍ର ସନ୍ତାନ ଜନ୍ମ ଦେଇଛନ୍ତି । ଉକ୍ତ ନାରୀ ଆରୋଗ୍ୟ ପାଇଁ ଚିକିତ୍ସାଧୀନ ଥିଲେ ; କିନ୍ତୁ ତାଙ୍କ ସ୍ୱାସ୍ଥ୍ୟରେ ହଠାତ୍ ଅବନତି ଘଟିଲା ଓ ସେ ଇହଲୀଳା ସାଙ୍ଗ କଲେ । କିନ୍ତୁ ସେ ଗର୍ଭବତୀ ଥିଲେ ଓ ସନ୍ତାନ ଭୂମିଷ୍ଠ ହେବାର ୧୨ ଘଣ୍ଟା ପୂର୍ବରୁ ଗର୍ଭସ୍ଥ ସନ୍ତାନଟି ଭୂମିଷ୍ଠ ହେଲା । ଶିଶୁଟିର ବାପା ଗୁଲଗାଲିଆ ପିଲାଟିକୁ ପାଇଥିବାରୁ ପତ୍ନୀ ହରାଇବା ଦୁଃଖ କେତେକାଂଶରେ ଲାଘବ ହୋଇଛି ।

## ପ୍ରାଚୀନ ଅଭିଶାପ

ବହୁ ଶହ ବର୍ଷର ଏକ ଅଭିଶାପ ଏବେ ବି ଫଳୁଛି ଏକ ବ୍ରିଟିଶ ପରିବାରରେ ଏବଂ ସେଇ ଅଭିଶାପର ପରିଣତି ସ୍ୱରୂପ ସେହି ସଂଭ୍ରାନ୍ତ ପରିବାରଟିରେ ଏକ ଅପମୃତ୍ୟୁ ଘଟିଯାଇଛି । ଏଲକ୍ରାଭେନ ନାମକ ଏକ ପରିବାର ହେମଷ୍ଟେଡ ମାର୍ଶାଲ ନାମରେ ଏକ ଗ୍ରାମରେ ରୁହନ୍ତି । ଏହି ପରିବାରର କୌଣସି ପୂର୍ବପୁରୁଷଙ୍କର ଦୁଷ୍କର୍ମ ଯୋଗୁଁ ସେହି ଗାଁର କୁମାରୀ କନ୍ୟାଟିଏ ଗର୍ଭବତୀ ହୋଇଯାଇଥିଲା । ସେଇଦିନୁ ଅଭିଶାପ ଦିଆଯାଇଥିଲା ଯେ, ସେହି ପରିବାରର ପୁରୁଷ ବଂଶଧରମାନେ ସେମାନଙ୍କ ମାଆଙ୍କର ମୃତ୍ୟୁ ପୂର୍ବରୁ ମରଣ ମୁଖରେ ପଡ଼ିବେ । ସେକାଳରୁ ଏଯାଏଁ ସେହି ବଂଶର ପୁରୁଷମାନେ କମ ବୟସରେ ହିଁ ମୃତ୍ୟୁ ବରଣ କରୁଛନ୍ତି । ଗତ କିଛିମାସ ତଳେ ମାତ୍ର ୨୨ ବର୍ଷରେ ଆତ୍ମହତ୍ୟା କରି ମଲେ ଥମାସ ରବେର୍ଟ ଡଗଲାସ କ୍ରାଭେନ ।

## ଅଧିକ ଫ୍ଲୋରଇଡ ବ୍ୟବହାର ସ୍ୱାସ୍ଥ୍ୟ ପକ୍ଷରେ ହାନିକାରକ

ଉନ୍ନତ ରାଷ୍ଟ୍ରମାନଙ୍କରେ ଦାନ୍ତର ଯତ୍ନ ପାଇଁ ଫ୍ଲୋରଇଡର ବହୁଳ ବ୍ୟବହାର ପ୍ରଚଳିତ ଥିଲେ ହେଁ ଭାରତ ପରି ବିକାଶଶୀଳ ଦେଶଗୁଡ଼ିକରେ ଏହାର ବ୍ୟବହାର ଫଳରେ ବିବିଧ ସ୍ୱାସ୍ଥ୍ୟଗତ ଅସୁବିଧା ଦେଖାଯିବାର ଆଶଙ୍କା ରହିଛି ।

ବିଶ୍ୱସ୍ୱାସ୍ଥ୍ୟ ସଙ୍ଗଠନ ତରଫରୁ ଫ୍ଲୋରଇଡ ମିଶ୍ରିତ ଲବଣର ବ୍ୟବହାର ସପକ୍ଷରେ ନିକଟରେ ଯେଉଁ ବିବୃତି ପ୍ରକାଶ ପାଇଥିଲା, ଭାରତର ଗବେଷକମାନେ ତା' ବିରୁଦ୍ଧରେ ପ୍ରତିବାଦ ଜଣାଇ ଅଛନ୍ତି ।

ଫ୍ଲୋରଇଡ ଗବେଷଣା ସଂକ୍ରାନ୍ତ ଆନ୍ତର୍ଜାତିକ ସଙ୍ଗଠନର ଭାରତୀୟ ଉପ-ସଭାପତି ଏ. କେ. ସୁଶୀଳା, ଏହାର ପ୍ରତିବାଦ କରି କହିଛନ୍ତି, ଏଥିରେ କେତେକ ବିପଜ୍ଜନକ ଭୁଲ ରହିଛି ।

## କୃତ୍ରିମ ଉପଗ୍ରହ ଧରିବାପାଇଁ ଆମେରିକୀୟ ଯାନ

ପ୍ରେସିଡେଣ୍ଟ ରିଗାନ୍ ମହାକାଶର ଉଚ୍ଚ କକ୍ଷରେ ଘୂରୁଥିବା କୃତ୍ରିମ ଉପଗ୍ରହ ଗୁଡ଼ିକୁ ଧରି ସ୍ପେସ ସଟଲ ନିକଟକୁ ଆଣିବାପାଇଁ ଏକ ଯାନ ନିର୍ମାଣର ପରିକଳ୍ପନା କରୁଛନ୍ତି । ଏଥି ନିମନ୍ତେ ୩୭.୫ ଲକ୍ଷ ଡଲାର ଖର୍ଚ୍ଚ ହେବ ବୋଲି ଆଶା କରାଯାଉଛି । ଅର୍ବିଟାଲ ମାନିଉଭରିଂ ଭେହିକିଲ ନାମରେ ପରିଚିତ ଏଇ ଯାନରେ କେହି ଲୋକ ରହିବେ ନାହିଁ ଏବଂ ଏହା ରିମୋଟ କଣ୍ଟ୍ରୋଲ ଦ୍ୱାରା ପରିଚାଳିତ ହେବ । ଏହାର କାର୍ଯ୍ୟ ହେବ କୃତ୍ରିମ ଉପଗ୍ରହ ଗୁଡ଼ିକୁ ମରାମତି ଓ ରକ୍ଷଣାବେକ୍ଷଣ କାର୍ଯ୍ୟପାଇଁ ନିମ୍ନ କକ୍ଷରେ ପରିକ୍ରମା କରୁଥିବା ସ୍ପେସ ସଟଲ ନିକଟକୁ ଆଣିବା ଭୂପୃଷ୍ଠକୁ ଖସିପଡ଼ିବାର ଆଶଙ୍କା ଥିବା କୃତ୍ରିମ ଉପଗ୍ରହଗୁଡ଼ିକୁ ମଧ୍ୟ ଏହା ଉଚ୍ଚତର କକ୍ଷପଥକୁ ଠେଲି ଦେଇପାରିବ ।

## ରାଷ୍ଟ୍ରପତି ନିମେରୀ ଲାଞ୍ଚୁଆ !

କୌଣସି ଦେଶର ସର୍ବୋଚ୍ଚ ଶାସକ ଯେ ଲାଞ୍ଚୁଆ ହୋଇପାରେ ଏକଥା ଶୁଣିଲେ ଯେ କେହି ବିସ୍ମିତ ହେବ । ମାତ୍ର କଥାଟି ସତ । ସୁଦାନ ମଧ୍ୟ ଦେଇ ଇସ୍ରାଏଲରେ ଯିହୁଦୀ କାରବାର କରିବାପାଇଁ ସୁଦାନର କ୍ଷମତାଚ୍ୟୁତ ରାଷ୍ଟ୍ରପତି ଜାଫର ନିମେରୀ ଓ ଅନ୍ୟ କେତେକ ଉଚ୍ଚ ପଦାଧିକାରୀ ଇଥିଓପିଆର ହଜାର ହଜାର ଯିହୁଦୀଙ୍କୁ ଅନୁମତି ଦେଉଥିଲେ ଓ ଏଥିପାଇଁ ସେମାନଙ୍କୁ ୫୬୦ ଲକ୍ଷ ଡଲାର ମୂଲ୍ୟର ଲାଞ୍ଚ ଦିଆଯାଇଥିଲା ବୋଲି "ଅବଜରଭର" ସମ୍ବାଦପତ୍ରରେ ପ୍ରକାଶ ପାଇଛି ।

ଲଣ୍ଡନରୁ ପ୍ରକାଶିତ ଏଇ ସାପ୍ତାହିକାରେ କୁହାଯାଇଛି ଯେ, ଇସ୍ରାଏଲ ଏଜେଣ୍ଟମାନଙ୍କ ସହାୟତାରେ ରାଷ୍ଟ୍ରପତି ନିମେରୀ ଯିହୁଦୀ ବେପାରୀମାନଙ୍କୁ ସୁଦାନରେ ସୁରକ୍ଷା ଦେଉଥିଲେ ଖାର୍ଟୁମରେ ସାମରିକ ବିଦ୍ରୋହ ଲାଗିବାର କିଛିଦିନ ପୂର୍ବରୁ ରାଷ୍ଟ୍ରପତି ନିମେରୀଙ୍କ ଜଣେ ସହକର୍ମୀ ବ୍ରିଗେଡ଼ିୟର ଫତି ଏରଓ୍ୱା ନ୍ୟୁୟର୍କ ଯାଇ ଲାଞ୍ଚ ଅର୍ଥର ଶେଷ କିସ୍ତି ଆଣିଥିଲେ ବୋଲି ସୁଦାନର ଜଣେ ଗୋଇନ୍ଦା ଅଫିସରଙ୍କଠାରୁ ପ୍ରକାଶ ।

## ଆଗୁଆ ଭୂମିକମ୍ପ ସୂଚନା ମିଳିପାରିବ ।

ଭୂମିକମ୍ପ ହେବାର ୪୮ ଘଣ୍ଟା ସମୟ ପୂର୍ବରୁ ଉପଗ୍ରହଗୁଡ଼ିକ ଦ୍ୱାରା ଠିକ୍ କେଉଁ ସ୍ଥାନରେ ଭୂମିକମ୍ପ ହେବାକୁ ଯାଉଛି, ତାହା ସୂଚନା ଦିଆଯାଇପାରିବ । ଏ ବିଷୟ ସୋଭିଏତ ବୈଜ୍ଞାନିକମାନେ ପ୍ରକାଶ କରିଛନ୍ତି । ରୁଷର ଉପଗ୍ରହ "ଓରିଏଲ-୩" ସାହାଯ୍ୟରେ ଭୂ-କମ୍ପନର ପ୍ରାୟ ସାଢେ ସତିଘଣ୍ଟା ଆଗରୁ କମ୍ପନର କ୍ଷେତ୍ରକୁ ଠାବ କରାଯାଇପାରିଥିଲା ବୋଲି ସୋଭିଏତ ସମ୍ବାଦ ସଂସ୍ଥା "ଏପିଏନ" ଖବରରେ ବୈଜ୍ଞାନିକମାନେ ଦାବି କରିଛନ୍ତି ।

ପୃଥିବୀର ଭୂମିତଳେ କମ୍ପନର ସୂତ୍ରପାତ ହେବା ମାତ୍ରେ ଉପଗ୍ରହ ଜାଣିପାରିବ ଏବଂ ତାହା ରେକର୍ଡ ହୋଇ ପାରିବ । ଫଳରେ ଭୂମିକମ୍ପର ଆଗୁଆ ବିବରଣୀ ଜାଣିବାରେ ଉପଗ୍ରହ ସହାୟକ ହୋଇପାରିବ ।

## ଯନ୍ତ୍ର ମଣିଷଦ୍ୱାରା ଚକ୍ଷୁରୋଗର ଅସ୍ତ୍ର ଚିକିତ୍ସା

ଋଷିଆରେ ଅତିଶୀଘ୍ର ବିଭିନ୍ନ ଚକ୍ଷୁରୋଗର ଅସ୍ତ୍ର ଚିକିତ୍ସା ଯନ୍ତ୍ରମଣିଷ (ରୋବଟ) ଦ୍ୱାରା କରାଯିବ । ଚକ୍ଷୁସର୍ଜନମାନେ ଆଉ ଛୁରୀ ଚଳାଇବେ ନାହିଁ ।

ଚକ୍ଷୁରୋଗ ଅସ୍ତ୍ର ଚିକିତ୍ସାକ ସ୍ୱୟଂକ୍ରିୟ କରାଇବା ଦିଗରେ ବର୍ତ୍ତମାନ ରୁଷିଆରେ ଜୋରସୋର ଗବେଷଣା ଚାଲିଛି । ମସ୍କୋ ରିସର୍ଚ୍ଚ ଇନଷ୍ଟିଚ୍ୟୁଟର ଡିରେକ୍ଟର ଅଧ୍ୟାପକ ଫିଓଡୋରୟ ଏହି ନୂତନ ବ୍ୟବସ୍ଥା ଉଦ୍ଭାବନ କରିଛନ୍ତି । ସେ ପ୍ରକାଶ କରି-ଛନ୍ତି, ଉକ୍ତ ଅସ୍ତ୍ରଚିକିତ୍ସା ପାଇଁ ଯନ୍ତ୍ରମଣିଷ ବର୍ତ୍ତମାନ ଫିନ୍‌ଲାଣ୍ଡ ଓ ଜାପାନରେ ତିଆରି ହେଉଛି ଏବଂ ୧୮ ମାସ ମଧ୍ୟରେ ରୁଷିଆକୁ ଆସିଯିବ ।

ଅଧ୍ୟାପକ ଫିଓଡୋରୟ କହିଛନ୍ତି ଯେ, ଭବିଷ୍ୟତରେ ଲୋକେ କୌଣସି ବ୍ୟାଧିର ଚିକିତ୍ସା ପାଇଁ ଉତ୍ତମ ଡାକ୍ତରଙ୍କ ଦ୍ୱାରସ୍ଥ ହେବା ପରିବର୍ତ୍ତେ ଉତ୍ତମ କାରିଗରୀ ବିଦ୍ୟାର ତଥା ଉତ୍ତମ ଇଞ୍ଜିନିୟରଙ୍କ ଆଶ୍ରୟ ନେବେ ।

## ବିଶ୍ୱରେ ଶିଶୁ ଜନ୍ମହାର ହ୍ରାସ

୧୯୮୩ ମସିହାରେ ପ୍ରତି ହଜାରେ ଜଣରେ ଶିଶୁ ଜନ୍ମହାର ୨୯ ଥିବାବେଳେ ବର୍ତ୍ତମାନ ଏହା ୨୭କୁ ଖସିଆସିଛି । ୧୯୮୩ ମସିହାରେ ଚୀନରେ ଏହି ଜନ୍ମହାର ପ୍ରତି ହଜାରରେ ୨୩ ଥିବାବେଳେ ବର୍ତ୍ତମାନ ଏହା ହ୍ରାସପାଇ ୧୯ରେ ପହଞ୍ଚିଲାଣି । ବର୍ତ୍ତମାନ ପୃଥିବୀରେ ପ୍ରତି ହଜାରରେ ଜନ୍ମହାର ୨୭ ଥିବାବେଳେ ମୃତ୍ୟୁହାର ହେଉଛି ୧୦ । ଫଳରେ ବାର୍ଷିକ ଜନସଂଖ୍ୟା ବୃଦ୍ଧିର ହାର ଶତକଡ଼ା ୧ ଦଶମିକ ୭ ଭାଗ ହୋଇଛି ; କିନ୍ତୁ ୧୯୮୩ ମସିହାରେ ଏହା ଏକ ଦଶମିକ ୮ ଭାଗ ଥିଲା ।

ଜନସଂଖ୍ୟା ବୃଦ୍ଧିରେ ବର୍ତ୍ତମାନ ଆଫ୍ରିକା ଅଗ୍ରଣୀ ରହିଛି । ଏଠାରେ ପ୍ରତି ହଜାରରେ ଜନ୍ମହାର ୪୫ । ଏହି ମହାଦେଶରେ ପ୍ରତି ମହିଳାଙ୍କର ହାରାହାରି ସନ୍ତାନ ସଂଖ୍ୟା ୬ ଦଶମିକ ୪ ।

## ହୃଦ୍‌ରୋଗ ସମ୍ପର୍କୀକରଣ ଯନ୍ତ୍ର

ଇଂଲଣ୍ଡର ଏକ କମ୍ପାନୀ ହୃଦରୋଗ ଆକ୍ରମଣ ସମ୍ପର୍କରେ ପୂର୍ବରୁ ସତର୍କ କରିଦେଇ ପାରୁଥିବା ଏକ କ୍ଷୁଦ୍ରଯନ୍ତ୍ର ବାହାର କରିଛନ୍ତି । ଏହା ଖୁବ୍ ଶୀଘ୍ର ବାହାରକୁ ବିକ୍ରିପାଇଁ ଆସିଯିବ । ଏକ ଇଲେକ୍ଟ୍ରୋ କାର୍ଡିଓଗ୍ରାଫ୍, ଏକ ମିନି କମ୍ପ୍ୟୁଟର ଏବଂ

ଏକ ଇଲେକ୍‌ଟ୍ରୋନିକ୍ ସ୍ମୃତିସଞ୍ଚାରକ ଯନ୍ତ୍ର ସାହାଯ୍ୟରେ ଏହି ହୃଦ୍‌ରୋଗ ସମ୍ପର୍କ୍‌ କରଣି ଯନ୍ତ୍ରଟି ନିର୍ମିତ । ଏହି ଯନ୍ତ୍ରଟି ରୋଗୀଟିର ପକେଟ୍‌ରେ ରଖାଯିବ। ସଙ୍ଗେ ସଙ୍ଗେ ଇଲେକ୍‌ଟ୍ରୋନ ମାଧ୍ୟମରେ ଏହାକୁ ରୋଗୀ ଶରୀର ସହ ସମ୍ପୃକ୍ତ କରାଯିବ । ଶରୀରରେ କୌଣସି ହୃଦରୋଗ ଜନିତ ଅସ୍ୱାଭାବିକତା ବା ବିପଜ୍ଜନକ ହୃଦ୍‌ସ୍ପନ୍ଦନ ଦେଖାଦେଲେ ଏହି ଯନ୍ତ୍ରଟିରେ ଏହାର ପ୍ରତିକ୍ରିୟା ସୃଷ୍ଟି ହେବ ଓ କେତେକ ଆଲୋକ ସଙ୍କେତ ଦେଖାଯିବ ।

## କେଉଁ ପତ୍ରିକାର ପ୍ରସାର କେତେ ?

୧୯୮୧ ମସିହାରେ ଦେଶରେ ୧୯ ହଜାର ୧୪୪ଟି ରେଜେଷ୍ଟ୍ରୀଭୁକ୍ତ ସମ୍ବାଦ-ପତ୍ର ଥିଲା । ୧୯୮୨ ମସିହାରେ ଏହା ୧୯ ହଜାର ୯୩୭କୁ ବୃଦ୍ଧି ପାଇଛି । ତେଣୁ ବାର୍ଷିକ ହାରହାରି ୪ ଦଶମିକ ୧ ଭାଗ ସମ୍ବାଦପତ୍ର ରେଜେଷ୍ଟ୍ରୀଭୁକ୍ତ ହୋଇଛନ୍ତି । କେନ୍ଦ୍ର ସୂଚନା ଓ ପ୍ରସାର ବିଭାଗ ୧୯୮୩ ମସିହା ରେଜେଷ୍ଟ୍ରୀଭୁକ୍ତ ସମ୍ବାଦ ସମୀକ୍ଷାକୁ ଭିତ୍ତି କରି ସୂଚନା ଦେଇଛନ୍ତି ।

୧୯୮୧ ମସିହାରୁ ଦେଶରେ ସମ୍ବାଦପତ୍ରର ଦ୍ରୁତ ବୃଦ୍ଧି ଘଟିଛି । ୧୯୮୨ ମସିହାରେ ବଙ୍ଗଳା ଦୈନିକ 'ଆନନ୍ଦ ବଜାର ପତ୍ରିକା' ଦେଶର ସବୁଠାରୁ ବେଶୀ ସମ୍ପ୍ରସାରିତ କାଗଜଭାବେ ପ୍ରସିଦ୍ଧି ଲାଭ କରିଥିଲା । ଏହାର ଦୈନିକ ପ୍ରସାର ସଂଖ୍ୟା ୪ ଲକ୍ଷ ୬ ହଜାର ୨୨୬ । ପ୍ରସାର ଦୃଷ୍ଟିରୁ ଦ୍ୱିତୀୟ ଥିଲା ବଙ୍ଗଳା ଦୈନିକ 'ଯୁଗାନ୍ତର ।' ଏହାର ପ୍ରସାର ସଂଖ୍ୟା ୩୩୮ ହଜାର ୯୪୪ । ମାଲୟାଲମ ସାପ୍ତାହିକୀ ଭାବେ ମାଲୟାଲୀ ମନୋରମାର ପ୍ରସାର ୫୭୭ ହଜାର ୨୩୦ । ଦ୍ୱିତୀୟ ସାପ୍ତାହିକୀ ବୃହତ୍ତମ ପ୍ରସାର ପତ୍ରିକା ତାମିଲ 'କୁମୁଦମ ୫୫୬ ହଜାର ୫୯ ଟି ଛାପା ଯାଉଥିଲା ।

ଦଶଟି ବିଭିନ୍ନ ଇଂରାଜୀ ଦୈନିକ ସମ୍ବାଦପତ୍ର ମଧ୍ୟରୁ 'ଇଣ୍ଡିଆନ ଏକ୍‌ସପ୍ରେସ'ର ଦୈନିକ ପ୍ରସାର ସଂଖ୍ୟା ଦୃଷ୍ଟିରୁ ପ୍ରଥମ । ଦ୍ୱିତୀୟ ପ୍ରସାର ସଂଖ୍ୟା ଦୃଷ୍ଟିରୁ 'ଟାଇମସ୍ ଅଫ୍ ଇଣ୍ଡିଆ'ର ପ୍ରସାର ସଂଖ୍ୟା ୫୨୬ ହଜାର ୯୦୩ । ପ୍ରସାର ଦୃଷ୍ଟିରୁ ତୃତୀୟ ସ୍ଥାନ ଦୈନିକ ମାଲୟାଲମ୍ ମନୋରମା ୪ଟି ସ୍ଥାନରୁ ପ୍ରକାଶ ପାଉଥିଲା । ଏହାର ଦୈନିକ ୫୦୨ ହଜାର ୨୨ଟି କପି ଛାପା ଯାଉଥିଲା । ୧୯୮୧ ମସିହା ପ୍ରସାରଣଠାରୁ ୧୯୮୨ ମସିହାରେ ୧ ହଜାର ୩୩୪କୁ ପ୍ରସାରଣ ବୃଦ୍ଧି ପାଇଥିଲା ।

## ଗୁରୁଣ୍ଡି ଗୁରୁଣ୍ଡି ୬ ଶହ କିଲୋମିଟର

ରାମେଶ୍ୱର ମତ୍ସ୍ୟଜୀବୀ ସଂଘର ସଭାପତି ଶ୍ରୀ ଏ. ଅମିରଥନ୍ ଗୁରୁଣ୍ଡି ଗୁରୁଣ୍ଡି ୬୦୦ କିଲୋମିଟର ଯାତ୍ରାକରି ତାମିଲନାଡୁ ମୁଖ୍ୟମନ୍ତ୍ରୀ ଏମ୍. ଜି. ରାମଚନ୍ଦ୍ରନ୍‌ଙ୍କ ସହିତ ସାକ୍ଷାତ କରିବାର ଯୋଜନା କରିଛନ୍ତି ।

## ୩୦ ହଜାର ବର୍ଷ ତଳର ଆଦିମାନବ

୩୦ ହଜାର ବର୍ଷ ପୂର୍ବେ ଚୀନ୍‌ର କିମାଇ ପ୍ରଦେଶ ଅନ୍ତର୍ଗତ କ୍ୱାଇଦମ ଅବବାହିକାରେ ଆଦିମାନବମାନେ ବାସ କରୁଥିଲେ ବୋଲି ସେଠାକାର ପ୍ରତ୍ନତତ୍ତ୍ୱବିତ୍-ମାନେ ପ୍ରଥମଥରପାଇଁ ପ୍ରମାଣ ପାଇଛନ୍ତି । ସେମାନେ ବ୍ୟବହାର କରୁଥିବା ପ୍ରାୟ ୧୨୩ ଗୋଟି ପଥର ନିର୍ମିତ ଅସ୍ତ୍ରଶସ୍ତ୍ର, ଛୁରି ଓ କୁରାଢ଼ୀ ଆବିଷ୍କାର କରିଛନ୍ତି । ଏଗୁଡ଼ିକମଧ୍ୟରୁ କେତୋଟି ଅସ୍ତ୍ରଶସ୍ତ୍ର ଶିଙ୍ଗ ଏବଂ ହାଡ଼ରୁ ନିର୍ମିତ ବୋଲି ଜଣାଯାଇଛି ।

## ମହାକାଶ ଯିବାକୁ ଟିକେଟ ମୂଲ୍ୟ

ମହାକାଶକୁ ଯାତ୍ରା କରିବାପାଇଁ ଟିକେଟର ମୂଲ୍ୟ ଦଶଲକ୍ଷ ମାର୍କିନ ଡଲାର । ତିନିଦିନ ବ୍ୟାପି ମହାକାଶ ଭ୍ରମଣରେ ୪୮ ଥର ପୃଥିବୀ ପରିକ୍ରମା କରିବାକୁ ସୁଯୋଗ ପାଇବେ । ଇଚ୍ଛୁକ ଯାତ୍ରୀମାନଙ୍କୁ ମାତ୍ର ଛଅ ସପ୍ତାହରୁ ଆଠ ସପ୍ତାହ ତାଲିମ ନେବାକୁ ପଡ଼ିବ ।

## କ୍ଷୁଦ୍ର ଟେଲିଭିଜନ କ୍ୟାମେରା

ସିଗାରେଟ୍ ପ୍ୟାକେଟ ଆକୃତିର ଏକ କ୍ଷୁଦ୍ର ଟେଲିଭିଜନ କ୍ୟାମେରା ରୁଷିଆରେ ପ୍ରସ୍ତୁତ କରାଯାଏ ।

ଏ ଇଲେକଟ୍ରୋନିକ୍ କ୍ୟାମେରା "କେ. ଟି. ୮୬"ଦ୍ୱାରା କେବଳ କଳାଧଳା ଚିତ୍ର ଗ୍ରହଣ କରାଯାଇପାରିବ । ଯେକୌଣସି ଟେଲିଭିଜନ ସେଟ ମାଧ୍ୟମରେ ଏ କ୍ୟାମେରାରେ ଗୃହୀତ ଚିତ୍ର ପ୍ରଦର୍ଶିତ ହୋଇପାରିବ ।

## ବିଚିତ୍ର ରେଷ୍ଟୁରାଣ୍ଟ

ବ୍ରାଜିଲ ଦେଶର ରିଓ-ଡି ଜେନେରିଓ ନଗରସ୍ଥ ଗୋଟିଏ ବିଚିତ୍ର ରେଷ୍ଟୁରାଣ୍ଟ ଅଛି । ଏହି ରେଷ୍ଟୁରାଣ୍ଟରେ ଚାକରର କାମ କରନ୍ତି ମାଙ୍କଡ଼ମାନେ । ଏମାନଙ୍କର ବ୍ୟବହାର ଖୁବ୍ ଭଦ୍ର । ଏମାନଙ୍କୁ ଟିପ ଦେବାକୁ ପଡ଼େନାହିଁ ।

## ୨୨୦ ବର୍ଷ ପୁରାତନ ମକ୍‌ବରା

ଚୀନ୍ ଦେଶର ତୟୋଜିନ ବନ୍ଦର ନିକଟରେ ପ୍ରାୟ ୨୨୦ ବର୍ଷ ପୁରାତନ ଗୋଟିଏ ମକ୍‌ବରାର ସନ୍ଧାନ ମିଳିଛି । ଏହି ମକ୍‌ବରାର ଲମ୍ବ ୪୦ ମିଟର । ଏହି ମକ୍‌ବରାଟିରେ ୨୨ଟି କୋଠରୀ, ୪ଟି ଘୋଡ଼ାଙ୍କ ଏବଂ କବର ଦିଆଯାଇଥିବା ୨୦ଟି ଶବ ମିଳିଛି ।

## ଡାଇନୋସରର ଅସ୍ଥିକଙ୍କାଳ

ଦକ୍ଷିଣ ଇଂଲଣ୍ଡରେ ଏବେ ବିଶାଳକାୟ ଜୀବ ଡାଇନୋସରର ଅସ୍ଥି ପିଞ୍ଜରା ମିଳିଛି । ଡାଇନୋସର ଏ ପୃଥିବୀ ପୃଷ୍ଠରେ ପ୍ରାୟ ୧.୨୫ କୋଟି ବର୍ଷ ପୂର୍ବେ ରହୁଥିଲେ ।

## ସ୍ୱତନ୍ତ୍ରତାର ପ୍ରତିମା

ନ୍ୟୁୟର୍କ ବନ୍ଦରରେ ସମୁଦ୍ର ଭିତରେ ବିଶାଳ ସ୍ୱତନ୍ତ୍ରତାର ପ୍ରତିମୂର୍ତ୍ତିଟିଏ ଅଛି । ଏହି ପ୍ରତିମାର ହାତରେ ସ୍ୱାଧୀନତାର ମଶାଲଟିଏ ଅଛି । ଏଇ ଅଳ୍ପଦିନ ତଳେ ଏହାର ମରାମତିପାଇଁ ଏହାକୁ ତଳକୁ ଓହ୍ଲାଇ ଦିଆଯାଇଛି । ଏହାର ମରାମତି କାମପାଇଁ ପ୍ରାୟ ଦୁଇଲକ୍ଷ ଡଲାର ଖର୍ଚ୍ଚ ହେବ । ୧୯୯୬ ମସିହାରେ ଏହି ପ୍ରତିମା ସ୍ଥାପନାର ୧୦୦ ବର୍ଷ ପୂର୍ଣ୍ଣହେବ । ଏହାକୁ ୪ ଜୁଲାଇ ୧୯୮୫ରେ ପୁଣି ସ୍ୱ-ସ୍ଥାନରେ ରଖାଯାଇଛି ।

## ପୌଷ୍ଟିକ ପାଣି

ରୁଷ ଦେଶର ବୈଜ୍ଞାନିକମାନେ ଏବେ ଏପରି ଏକ ପ୍ରକାରର ପାଣି ତିଆରି କରିଛନ୍ତି, ଯହିଁରେ ଶୋଷ ମେଣ୍ଟାଇବା ସଙ୍ଗେ ସଙ୍ଗେ ଗୋଟିଏ ଟନିକ୍ ବା ପୌଷ୍ଟିକ ଆହାରର କାମ କରିବ । ଏଇ ବିଶେଷ ଧରଣର ପାଣିରେ ଲୁଣ, ପିପରମେଣ୍ଟ, ଭିଟାମିନ୍

ଏବଂ ଲବଣର ମିଶ୍ରଣ ଅଛି । ଏହି ପାଣି ପିଇଲେ ଅନେକ ଘଣ୍ଟା ପର୍ଯ୍ୟନ୍ତ ଶୋଷ ଲାଗିବ ନାହିଁ ।

**ଲଣ୍ଡା ମୁଣ୍ଡରେ ବାଳ**

ବୈଜ୍ଞାନିକମାନେ ଏବେ ଲେସର କିରଣ ସାହାଯ୍ୟରେ ଲଣ୍ଡା ମୁଣ୍ଡରେ ବାଳ ଉଠାଇବା ସମ୍ଭବ କଲେଣି । ଖପୁରୀରେ ୩.୫ ମିଲିମିଟର ପର୍ଯ୍ୟନ୍ତ କିରଣକୁ ପ୍ରବେଶ କରାଇ ବାଳର ନିଷ୍କ୍ରିୟ ମୂଳକୁ ପୁଣି ସକ୍ରିୟ କରାଯାଏ ଓ ବାଳ ବଢାଯାଏ ।

**ପୃଥିବୀରେ ୨ କୋଟି ୮୦ ଲକ୍ଷ ଚକ୍ଷୁହୀନ ଅଛନ୍ତି**

ଜାତିସଙ୍ଘର ଏକ ସମୀକ୍ଷାରୁ ଜଣାପଡ଼ିଛି ଯେ, ପୃଥିବୀରେ ଦୁଇକୋଟି ୮୦ ଲକ୍ଷ ଚକ୍ଷୁହୀନ ଅଛନ୍ତି । ସେଥିମଧ୍ୟରୁ କେବଳ ବିକାଶଶୀଳ ଦେଶଗୁଡ଼ିକରେ ଦୁଇ ତୃତୀୟାଂଶ ଚକ୍ଷୁହୀନ ଅଛନ୍ତି ।

ବିକାଶଶୀଳ ଦେଶଗୁଡ଼ିକରେ ଚକ୍ଷୁରୋଗ ଭିଟାମିନ୍ 'ଏ' ଓ ଚିକିତ୍ସା ଅଭାବ ଯୋଗୁଁ ବହୁ ପରିମାଣରେ ସଂକ୍ରମିତ ହେଉଛି ବୋଲି ଏଥିରେ ପ୍ରକାଶ ପାଇଛି । ଜାତିସଂଘ ବିବରଣୀରୁ ଆହୁରି ମଧ୍ୟ ପ୍ରକାଶ ଯେ, ବିକାଶଶୀଳ ଦେଶଗୁଡ଼ିକରେ ଥିବା ୮୦ ଭାଗ ଅନ୍ଧ ସାଧାରଣ ଚିକିତ୍ସା ଦ୍ୱାରା ଆରୋଗ୍ୟ କରାଯାଇପାରିବ । ଏଥିପାଇଁ ବିଶ୍ୱସ୍ୱାସ୍ଥ୍ୟ ସଙ୍ଗଠନ ତରଫରୁ ୧୯୮୯ ମସିହା ସୁଦ୍ଧା ଅନ୍ଧତ୍ୱକୁ ଦୂର କରିବାକୁ ୭୦ଟି ବିକାଶଶୀଳ ଦେଶପାଇଁ ବିଭିନ୍ନ କାର୍ଯ୍ୟକ୍ରମ ମଧ୍ୟରେ ସ୍ୱାସ୍ଥ୍ୟସେବୀମାନଙ୍କୁ ଶିକ୍ଷାଦେବା, ଚକ୍ଷୁରୋଗ ବ୍ୟାପିଥିବା ଅଞ୍ଚଳ ଚିହ୍ନଟ ଓ ସେଥିପାଇଁ ବିଭିନ୍ନ ଯୋଜନା, ନୂତନ କାରିଗରୀ ସହଯୋଗ ଏବଂ ଦୃଷ୍ଟିଶକ୍ତି ହରାଇଥିବା ସ୍କୁଲ ଛାତ୍ରମାନଙ୍କୁ ଚିକିତ୍ସା ପରେ ସୁଲଭ ମୂଲ୍ୟରେ ଚଷମା ଯୋଗାଇବା ଆଦି କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରାଯାଇଛି ବୋଲି ଉଲ୍ଲେଖ ଅଛି ।

**ଜାଣନ୍ତି କି ?**

୧—୧୯୦୦ ମସିହାରେ ପ୍ୟାରିସ୍‌ଠାରେ ଅନୁଷ୍ଠିତ ହୋଇଥିବା ଅଲମ୍ପିକ୍ ଖେଳରେ କ୍ରିକେଟ ସ୍ଥାନ ପାଇଥିଲା । ଏହା ଏକମାତ୍ର ଅଲମ୍ପିକ୍, ଯେଉଁଥିରେ କି କ୍ରିକେଟ ଖେଳ ହୋଇଥିଲା ଏବଂ ଇଂଲଣ୍ଡ ଅଲମ୍ପିକ ଚାମ୍ପିଆନ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଥିଲା । ତେଣୁ ଆଜିପର୍ଯ୍ୟନ୍ତ ଇଂଲଣ୍ଡକୁ ଅଲମ୍ପିକ୍ କ୍ରିକେଟ ଚାମ୍ପିଆନ ବୋଲି କୁହାଯାଉଛି ।

୨—ଇଂଲଣ୍ଡର ଏ: ସି: ଭବରୀ ଟେଷ୍ଟ ଇତିହାସରେ ସର୍ବପ୍ରଥମେ ୧୦୦୦ ରନ୍ ସଂଗ୍ରହ କରିଛନ୍ତି ।

୩—ଟେଷ୍ଟ ଇତିହାସରେ ସବୁଠାରୁ କମ୍ ବୟସରେ ଟେଷ୍ଟମ୍ୟାଚ ଖେଳିଛନ୍ତି ପାକିସ୍ତାନର ମୁସ୍ତାକ ଅହମ୍ମଦ । ସେ ୧୫ ବର୍ଷ ୧୨୪ ଦିନରେ ତାଙ୍କର ପ୍ରଥମ ଟେଷ୍ଟ ୱେଷ୍ଟଇଣ୍ଡିଜ ବିରୁଦ୍ଧରେ ଲାହୋରଠାରେ ୧୯୫୮-୫୯ରେ ଖେଳିଥିଲେ ।

୪—ଟେଷ୍ଟ ଇତିହାସରେ ସବୁଠାରୁ ବେଶୀ ବୟସରେ ଟେଷ୍ଟମ୍ୟାଚ ଖେଳିଛନ୍ତି ଇଂଲଣ୍ଡର ଜେ. ସନଟନ । ସେ ୧୮୭୬-୭୭ରେ ଅଷ୍ଟ୍ରେଲିଆ ବିରୁଦ୍ଧରେ ମେଲବୋର୍ଣ୍ଣଠାରେ ୪୯ ବର୍ଷ ୧୧୯ ଦିନରେ ତାଙ୍କର ପ୍ରଥମ ଟେଷ୍ଟ ଖେଳିଥିଲେ ।

୫—ଟେଷ୍ଟ କ୍ରିକେଟରେ ୧୦୦ କିମ୍ବା ତା'ଠାରୁ ଅଧିକ ଉଇକେଟ୍ ନେଇଥିବା ଭାରତୀୟ ବୋଲରମାନେ ହେଉଛନ୍ତି—ବିଷନସିଂହ ବେଦୀ (୨୬୬ ଉଇକେଟ), କପିଳ ଦେବ (୨୫୮ ଉଇକେଟ), ଚନ୍ଦ୍ରଶେଖର (୨୪୨ ଉଇକେଟ), ପ୍ରସନ୍ନ (୧୮୯

ଉଇକେଟ), ବିନୁମଙ୍କଡ (୧୬୨ ଉଇକେଟ), ଭେଙ୍କଟ ରାଘବନ (୧୫୫ ଉଇକେଟ), ସୁଭାଷ ଗୁପ୍ତେ (୧୫୯ ଉଇକେଟ), ଦିଲିପ୍ ଦୋଷୀ (୧୧୩ ଉଇକେଟ) ଏବଂ କୋ ଘାଭ୍ରୀ (୧୦୯ ଉଇକେଟ) ।

୬—ରଣଜୀ ଟ୍ରଫିରେ ସର୍ବାଧିକ ରନ କରିଛନ୍ତି ଅଶୋକ ମଙ୍କଡ । ସେ ସମୁଦାୟ ୬ ୧୯ ରନ କରିଛନ୍ତି ।

## ମାର୍କୋପୋଲୋଙ୍କ ଐତିହାସିକ ଯାତ୍ରାପଥର ଆବିଷ୍କାର

ପର୍ଯ୍ୟଟକମାନଙ୍କ ପକ୍ଷରେ ମାର୍କୋପୋଲୋଙ୍କ ଐତିହାସିକ ଯାତ୍ରାପଥ ଖୋଜି ଠାବକରିବା ସମ୍ଭବ କି ନୁହେଁ ସେଇ ଅନୁସନ୍ଧାନରେ ଭେନିସରୁ ବ ହାରି ବେଜିଂରେ ଆସି ପହଞ୍ଚିଥିବା ଜଣେ ଟ୍ରାଭେଲ ଏଜେଣ୍ଟ ପ୍ରକାଶ କରିଛନ୍ତି ଯେ, ଗତ ୭ମ ଶତାବ୍ଦୀ ମଧ୍ୟରେ ଉକ୍ତ ଯାତ୍ରାପଥର ବିଶେଷ ପରିବର୍ତ୍ତନ ହୋଇନାହିଁ ।

ମିଲାନର ୪୯ ବର୍ଷ ବୟସ୍କ ବେପ୍ ସେ ଟେଷ୍ଟି କହିଛନ୍ତି ଯେ, ମାର୍କୋପୋଲୋ ଯାହାସବୁ ଦେଖିଥିଲେ, ମୁଁ ସେହିସବୁ ଜିନିଷ ଦେଖିଛି ବୋଲି ମୋର ଧାରଣା । ଅବଶ୍ୟ ମାର୍କୋପୋଲ ଘୋଡ଼ା ପିଠିରେ ବସି ଯେ ସବୁ ଦେଖିଥିଲେ, ମୋ ପରି କାର ଭିତରୁ ନୁହେଁ ।" ଲୋକମାନେ ବିଶେଷତଃ ତିବ୍ବତ, ଭାରତ ଓ ପାକିସ୍ଥାନର ଅଧିବାସୀ ଠିକ୍ ପୂର୍ବପରି ଅଛନ୍ତି ।

ଦୀର୍ଘ ୫୬ ଦିନର ଅଭିଯାନରେ ସେ ଯୁଗୋସ୍ଲୋଭିଆ, ଗ୍ରୀସ, ତୁର୍କୀ, ଇରାନ, ନେପାଳ, ପ୍ରଭୃତି ଦେଶରେ ୧୯,୧୦୦ କିଲୋମିଟର ପଥ ଅତିକ୍ରମ କରିଛନ୍ତି ।

## ସୌରଶକ୍ତି ବିମାନ

ଆମେରିକାର 'ଲକ୍‌ହୀଡ' କମ୍ପାନୀ ସଂପ୍ରତି ଏକ ଅସାଧାରଣ ବିମାନ ପ୍ରସ୍ତୁତ କରିଛନ୍ତି । ଏହା ଏକ ଚାଳକହୀନ ବିମାନ ଓ ଏହା ସୌରଶକ୍ତିର ଜାଳେଣିରେ ଚାଲିବ । ଏହା ଥରେ ଉଡ଼ିବାକୁ ଆରମ୍ଭ କଲେ କ୍ରମାଗତ ଏକବର୍ଷ ନ ଓହ୍ଲାଇ ଉଡ଼ି-ପାରିବ । ଏଇ ବିମାନକୁ ମଧ୍ୟ ବିଭିନ୍ନ ଭାବରେ ବ୍ୟବହାର କରାଯାଇପାରିବ । କୃଷି ଓ ସାମରିକ କ୍ଷେତ୍ରରେ ଏହାକୁ ମଧ୍ୟ ବ୍ୟବହାର କରାଯିବ । ଉପଗ୍ରହ ଯେଉଁସବୁ କାର୍ଯ୍ୟ କରିପାରେ ଏଇ ବିମାନ ମଧ୍ୟ ସେଇପରି କାର୍ଯ୍ୟ କରିବାକୁ ସକ୍ଷମ ହେବ । 'ଲକହୀଡ' କମ୍ପାନୀ ସୂତ୍ରରୁ ପ୍ରକାଶ ଯେ, ଏଇ ବିମାନ ତିଆରିପାଇଁ ପ୍ରାୟ ଏକକୋଟି ଟଙ୍କା ଖର୍ଚ୍ଚ ହୋଇଛି ।

## ରକ୍ତର ବିକଳ୍ପ

ବେଲଗ୍ରେଡଠାରେ ଅନୁଷ୍ଠିତ ଇଣ୍ଟର ନ୍ୟାସନାଲ ବାୟୋ ଫିଜିକସ ସିମ୍-ପୋଜିୟମ ଠାରେ ଏକ ଆଲୋଚନା ଚକ୍ରରେ ଦାବି କରାଯାଇଛି ଯେ, ଫ୍ଲୁୟର କାର୍ବନ ଫ୍ଲୁଇଡ୍‌କୁ ମାନବ ଶରୀରରେ ରକ୍ତର ବିକଳ୍ପ ହିସାବରେ କାର୍ଯ୍ୟକାରୀ କରାଯାଇପାରେ । ଏହା ଭିତର ଦେଇ ଅକ୍ସିଜେନ ପ୍ରବାହିତ ହେଉଥିବାରୁ ଏ ବିଷୟ ସ୍ଥିରକରାଯାଇଛି । ଜେନିଭା ବିଶ୍ୱବିଦ୍ୟାଳୟର ଗିୟାନନି ମଟଟା ହାର୍ଭାର୍ଡ ବିଶ୍ୱ-ବିଦ୍ୟାଳୟର ରବର୍ଟ ଗେୟର କି ପୂର୍ବ ଜର୍ମାନୀ ଏକାଡେମୀ ଅଫ୍ ସାଇନ୍‌ସର ହ୍ୟାଲ ମେଲିଜାରଟି । ଏଇ ତିନିଜଣ ଅଧ୍ୟାପକ ଏକାଠି ଏଇ ଦାବି ଜଣାଇଛନ୍ତି ।

## ଗାଡ଼ି ଆଣେଇ ଲୋକଙ୍କୁ ଚଢ଼ାଏ

କାନାଡ଼ାର ଏକ କମ୍ପାନୀ ଗୋଟିଏ ନୂଆପ୍ରକାର ବସ ପ୍ରସ୍ତୁତ କରିଛନ୍ତି । ଚାଲି ନ ପାରୁଥିବା ଲୋକ, ଯେଉମାନେ କି ଚକଲଗା ଚୌକି ବ୍ୟବହାର କରନ୍ତି । ସେମାନେ ଚଢ଼ିବାପାଇଁ ଏ ବସଟି ଆଣ୍ଠେଇ ପଡ଼େ ।

ଏଇ ପ୍ରକାର ବସର ଫ୍ରେମ ଏବଂ ଆକ୍‌ସଲ୍ ମଝିରେ କେତେଗୁଡ଼ିଏ ବାୟୁ-ପୂର୍ଣ୍ଣ ଥଳି ଖଞ୍ଜାଯାଇ ଏକ ନୂଆପ୍ରକାର ଝୁଲଣ ବ୍ୟବସ୍ଥା କରାଯାଇଛି । ବସ୍ ରହିବା

ଡାଗରେ ଗୁଳକ ଗୋଟିଏ ନିର୍ଦ୍ଦିଷ୍ଟ ବଟମ ଚିପିଦିଏ । ଫଳରେ ଥଳିଗୁଡ଼ିକ ବାୟୁଶୂନ୍ୟ ହୋଇଯାଏ ଏବଂ ବସଟି ତଳଆଡ଼କୁ ସଙ୍କୁଚିତ ହୋଇଯାଏ ।

ଯେତେବେଳେ ଡଜଲଗା ଚୌକ ବ୍ୟବହାର କରୁଥିବା ଯାତ୍ରୀମାନେ ବସ୍‌ ଭିତରକୁ ଚଢ଼ିଯାଆନ୍ତି, ଥଳିଗୁଡ଼ିକରେ ପୁନର୍ବାର ବାୟୁ ଭର୍ତ୍ତି ହୋଇଯାଏ ଏବଂ ବସ୍‌ଟିରେ ସ୍ୱାଭାବିକ ଉଚ୍ଚତା ହୋଇଯାଏ । ଏହାପରେ ବସଟି ସ୍ୱାଭାବିକ ଭାବେ ଯାଇପାରେ ।

**ଲଣ୍ଠନ ମାଛ**

ଏହି ପ୍ରକାର ମାଛ ସାଧାରଣତଃ ସମୁଦ୍ରର ଗଭୀର ଅଂଶରେ ରୁହନ୍ତି । ସମୁଦ୍ରର ଗଭୀର ଅଂଶ ଅତ୍ୟଧିକ ଥଣ୍ଡା ଓ ଅନ୍ଧାର ; କାରଣ ସୂର୍ଯ୍ୟକିରଣ ସମୁଦ୍ର ଜଳ ପର୍ଯ୍ୟନ୍ତ ଯାଇପାରେ ନାହିଁ । ଏହି ମାଛର ଦେହରେ ଥିବା କେତେକ ଉଜ୍ଜ୍ୱଳ ଦାଗରୁ ଆଲୋକ ବାହାରିଥାଏ । ଏହି ଦାଗ ଗୁଡ଼ିକରେ ଫସଫରସ ଅଂଶ ଥିବାରୁ ଏପରି ହୋଇଥାଏ । ଏଇ ଦପଦପ ହେଉଥିବା ଆଲୋକଦ୍ୱାରା ସେ ନିଜର ଆକ୍ରମଣକାରୀ ଠାରୁ ନିରାପଦରେ ରହିପାରେ । କେତେକ ମାଛଙ୍କର ପେଟତଳେ ଏଇପରି ଦାଗ ଥାଏ । ଅନ୍ୟ କେତେକଙ୍କର ପେଟରେ ଟିକେ ଉପରକୁ, ଲାଞ୍ଜଠାରୁ ମୁଣ୍ଡପର୍ଯ୍ୟନ୍ତ ଏହା ଥାଏ । ରେଳଗାଡ଼ିର ଆଗରେ ଥିବା ବଲବପରି ଏଇ ମାଛର ମୁଣ୍ଡପାଖରେ ଏକ ବଡ଼ ଉଜ୍ଜ୍ୱଳ ଦାଗ ଥାଏ ।

ଲଣ୍ଠନ ମାଛର ଆଖି ଅନ୍ୟସବୁ ମାଛମାନଙ୍କ ଆଖିଠାରୁ ବଡ଼ । ଏହାର ଲାଞ୍ଜ ପାଖରେ ଏକ ଛୋଟ ଡେଣା ଥିବାରୁ ଜଣାଯାଏ ଯେ, ଏମାନେ 'ସାଲମୋନ' ମାଛର ବଂଶଧର । ଏଇ ମାଛର ଲମ୍ବ ପାଞ୍ଚରୁ ଦଶ ସେ.ମି: ପର୍ଯ୍ୟନ୍ତ ହୋଇଥାଏ । ଉପରିଆ ପାଟିରେ ଥିବା ଦାନ୍ତଗୁଡ଼ିକ ଛୁରୀପରି ଧାର । ସେ ସମୁଦ୍ର ମଧ୍ୟରେ ଥିବା ଛୋଟ ଛୋଟ ଜଳଜୀବମାନଙ୍କୁ ଖାଏ ।

କେତେକ ଲଣ୍ଠନ ମାଛ ରାତିରେ ସୂର୍ଯ୍ୟକିରଣ ନଥିବା ଯୋଗୁଁ ପାଣି ଉପରକୁ ଆସନ୍ତି । ସୂର୍ଯ୍ୟ ଉଇଁବା ପୂର୍ବରୁ ଏମାନେ ପୁଣି ଗଭୀର ଜଳକୁ ଫେରିଯାଆନ୍ତି । କାରଣ ସୂର୍ଯ୍ୟାଲୋକ ଏମାନଙ୍କର ଶତ୍ରୁ ।

**ବ୍ରିଟେନ ରାଜା ପ୍ରତିବର୍ଷ ଭିକାରୀର ପାଦ ଧୁଅନ୍ତି**

ବ୍ରିଟେନର ରାଜା ଖାଲିପାଦରେ ଚାଲିବାକୁ ମନା, ଅଥଚ ସେହି ରାଜା ପ୍ରତିବର୍ଷ ରାଜ୍ୟର କେତେକ ଗରିବଙ୍କ ପାଦଧୋଇ ବସିବାକୁ ସ୍ଥାନଦେଇ ସବୁଠାରୁ ଉତ୍ତମ ଏବଂ ସୁମିଷ୍ଟ ଖାଦ୍ୟ ଖାଇବାକୁ ଦିଅନ୍ତି । ୱେଷ୍ଟମିନିଷ୍ଟର ଆବେଠାରେ, ପ୍ରତିବର୍ଷ ଗୁଡ୍‌ଫ୍ରାଇଡ଼େ ପୂର୍ବଦିନ ରାଜା ଏଇପରି ଗରିବଙ୍କୁ ପଇସା ଦିଅନ୍ତି ଏବଂ ମାଂସ ପଲଉ ମିଠା ଇତ୍ୟାଦି ଖାଇବାକୁ ଦିଅନ୍ତି । ଏଇ ଗୁରୁବାର ଦିନ ନିଜେ ଯୀଶୁ ତାଙ୍କ ଶିଷ୍ୟମାନଙ୍କ ପାଦ ଧୋଇଥିଲେ ଏବଂ ତା' ପରଦିନ ତାଙ୍କୁ କ୍ରୁଶବିଦ୍ଧ କରାଗଲା । ତେଣୁ ସେଇ ଗୋଡ଼ ଧୋଇବା ସ୍ମୃତିକୁ ମନେରଖି ରାଜା ପ୍ରତି ଗୁରୁବାର ଗରିବଙ୍କ ପାଦ ଧୁଅନ୍ତି । ଏଇ ଗୁରୁବାରକୁ ''ମଣ୍ଡି ଥର୍ସଡେ'' ଏବଂ ପଇସା ଦେବାକୁ 'ମଣ୍ଡି-ମନି' କୁହାଯାଏ । ଏଇ ଗୋଡ଼ ଧୋଇବା ପ୍ରଥା ରାଜା ନିଜେ ୧୬୮୮ ଯାଏଁ କରିଥିଲେ । ୧୭୨୪ ଯାଏଁ ରାଜାଙ୍କ ତରଫରୁ ତାଙ୍କ ପ୍ରତିନିଧି ଗୋଡ଼ ଧୋଉଥିଲେ । ଏହି ପ୍ରତିନିଧି ଗୋଡ଼ ଧୋଇବା ପ୍ରଥା ପ୍ରଥମ ଏଲିଜାବେଥଙ୍କ ଠାରୁ ଆରମ୍ଭ ହୋଇଥିଲା ।

ପରବର୍ତ୍ତୀ ସମୟରେ ଏଇ ପ୍ରଥା ବନ୍ଦ ହୋଇ କେବଳ 'ମଣ୍ଡି-ମନି' ବିତରଣ କରାଗଲା । ଏଗୁଡ଼ିକ ମୁଦ୍ରାଶାଳାରେ ସ୍ୱତନ୍ତ୍ର ଭାବେ ନିର୍ମିତ । ରାଣୀ ବା ରାଜାଙ୍କ ବୟସ ଯେତିକି ବର୍ଷ, ସେତିକି ସେଟ ମଣ୍ଡିମନି ତିଆରି ହୁଏ । ରାଜା ବା ରାଣୀ ତାହାକୁ ଗୁରୁବାର ଗରିବଙ୍କ ମଧ୍ୟରେ ବିତରଣ କରନ୍ତି ।

**ଦୂଷିତ ଜଳର ଅପକାରିତା**

ବିଶ୍ୱର ପ୍ରାୟ ୫୦୦ ନିୟୁତ ଲୋକ ମୋତିଆବିନ୍ଦୁ ରୋଗରେ ପୀଡ଼ିତ ହୋଇ ଆଂଶିକ ଭାବରେ ଦୃଷ୍ଟିଶକ୍ତି ହରାଉଛନ୍ତି । ସେହିପରି ୨୫୦ ନିୟୁତ ଲୋକଙ୍କର ଏଲିଫାଣ୍ଟି ଆସିସ୍ ଯୋଗୁଁ ଶରୀରର ଅଙ୍ଗ ଫୁଲିଯାଉଛି । ୨୦୦ ନିୟୁତ ଲୋକ ସିଷ୍ଟୋ-ସୋମିଆସିସରେ ଆକ୍ରାନ୍ତ ହେବା ହେତୁ ତାଙ୍କର ପରିସ୍ରାରେ ରକ୍ତନିର୍ଗତ ହେଉଛି । ୧୬୦ ନିୟୁତ ଲୋକ ମ୍ୟାଲେରିଆ ଏବଂ ୧୦୦ ନିୟୁତ ଲୋକ ଝାଡ଼ାରୋଗରେ ଶିକାର ହୋଇଛନ୍ତି ବୋଲି ଏକ ସମୀକ୍ଷାରୁ ଜଣାଯାଇଛି ।

କେବଳ ଭାରତରେ ଜଳଜନିତ ରୋଗଯୋଗୁଁ ପ୍ରତିବର୍ଷ ପ୍ରାୟ ୭୩ ନିୟୁତ ଶ୍ରମଦିବସ ନଷ୍ଟ ହେଉଛି । ତେଣୁ ପ୍ରତିବର୍ଷ ଚିକିତ୍ସା ଖର୍ଚ୍ଚ ଏବଂ ଉତ୍ପାଦନ ହ୍ରାସ ବାବଦ ଭାରତକୁ ପ୍ରାୟ ୮,୫୦୦ ନିୟୁତ ଟଙ୍କାର କ୍ଷତି ସହିବାକୁ ପଡ଼ୁଛି ।

ଆହୁରି ମଧ୍ୟ ୫ ବର୍ଷରୁ କମ୍ ବୟସ୍କ ଶିଶୁ ଦୂଷିତ ଜଳଜନିତ ରୋଗର ଶିକାର ହେଉଛନ୍ତି । ୟୁନିସେଫ୍ ସୂତ୍ରରୁ ପ୍ରକାଶ ଯେ, ବିଶ୍ୱର ୧୦୦୦ ନିୟୁତ ଶିଶୁ ବିଶୁଦ୍ଧ ପାନୀୟ ଜଳପାନରୁ ବଞ୍ଚିତ ଅଛନ୍ତି । ବ୍ରଣ୍ଟ କମିଶନର ବିବରଣୀ ଅନୁଯାୟୀ ପ୍ରତିବର୍ଷ ପ୍ରଗତିଶୀଳ ରାଷ୍ଟ୍ରଗୁଡ଼ିକର ୨୦ରୁ ୨୫ ନିୟୁତ ପର୍ଯ୍ୟନ୍ତ ୫ ବର୍ଷୀୟ ଶିଶୁ ମୃତ୍ୟୁବରଣ କରୁଛନ୍ତି । ଏହି ମୃତ୍ୟୁବରଣ କରିଥିବା ଶିଶୁମାନଙ୍କ ମଧ୍ୟରୁ ପ୍ରାୟ ଏକତୃତୀୟାଂଶ ଶିଶୁ କେବଳ ଦୂଷିତଜଳ ଯୋଗୁ ଝାଡ଼ାରୋଗରେ ପ୍ରାଣ ହରାଉଛନ୍ତି । ଭାରତରେ ପ୍ରତିବର୍ଷ ୧ କୋଟି ୫୦ ଲକ୍ଷ ଶିଶୁ ଝାଡ଼ାରୋଗରେ ପ୍ରାଣ ହରାଉଛନ୍ତି । ୧୯୯୦ ମସିହା ସୁଦ୍ଧା ରୋଗମୁକ୍ତ ପାନୀୟ ଜଳଯୋଗାଣ ତଥା ମଣିଷକୃତ ବିଭିନ୍ନ ଅଳିଆ ଆବର୍ଜନାର ନିଷ୍କାସନ ନିମନ୍ତେ ଜାତିସଂଘ ପକ୍ଷରୁ ନିଷ୍ପତ୍ତି ନିଆଯାଇଛି । ଏହାଦ୍ୱାରା ଶିଶୁ ମୃତ୍ୟୁହାର ହ୍ରାସ ପାଇପାରିବ ।

ଭାରତରେ ପାନୀୟଜଳ ସମସ୍ୟା ଉତ୍କଟ ପ୍ରତୀୟମାନ ହେଉଥିଲେ ମଧ୍ୟ ଏଥିରେ ସଫଳତା ଆସିପାରିଛି । ଦଶନ୍ଧିର ପ୍ରାରମ୍ଭିକ ବର୍ଷ ଅର୍ଥାତ ୧୯୮୧ ମସିହାରେ ନିର୍ଦ୍ଧାରିତ ଲକ୍ଷ୍ୟରୁ ଶତକଡ଼ା ୩୧ ଭାଗ ଅଞ୍ଚଳକୁ ପାନୀୟଜଳ ଯୋଗାଇ ଦିଆଯାଇଛି । ୧୯୯୦ ମସିହା ବେଳକୁ ଦେଶର ସମସ୍ତ ଗ୍ରାମାଞ୍ଚଳକୁ ପାନୀୟଜଳ ଯୋଗାଣ ମାନଚିତ୍ରରେ ଅନ୍ତର୍ଭୁକ୍ତ କରାଯିବ । ସେହିପରି କଥିତ ସମୟ ମଧ୍ୟରେ ଗ୍ରାମାଞ୍ଚଳ ଜନସଂଖ୍ୟାର ଶତକଡ଼ା ୨୫ ଭାଗ ଲୋକଙ୍କୁ ପରିମଳ ସୁବିଧା ଯୋଗାଇବା ସଙ୍ଗେ ସଙ୍ଗେ ମଣିଷକୃତ ଅଳିଆ ଆବର୍ଜନାଗୁଡ଼ିକ ଉପଯୁକ୍ତ ଭାବରେ ନିଷ୍କାସନ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

ଦୂଷିତ ପାନୀୟଜଳ ସମସ୍ୟା ମୁଖ୍ୟତଃ ଅପରିଷ୍କୃତ ପାଇଖାନା ଯୋଗୁଁ ଘଟୁଅଛି । ତେଣୁ ସହରାଞ୍ଚଳରେ ଥିବା ୧୨-୨୮ ନିୟୁତ ଶୁଷ୍କ ପାଇଖାନାକୁ ଫ୍ଲସ୍ ପାଇଖାନାରେ ପରିଣତ କରିବା ଆବଶ୍ୟକ । ସମ୍ପ୍ରତି ବାର୍ଷିକ ପ୍ରାୟ ୨୫ ହଜାର ଶୁଷ୍କ ପାଇଖାନାକୁ ଫ୍ଲାସ ଲାଟ୍ରିନରେ ପରିଣତ କରାଯାଉଛି । କୌଣସି କୌଣସି ବର୍ଷ ୧ଲକ୍ଷ ଲାଟ୍ରିନକୁ ଫ୍ଲସ ଲାଟ୍ରିନରେ ପରିବର୍ତ୍ତନ କରାଯାଇଥିଲେ ମଧ୍ୟ ଏହି ସମସ୍ୟା ସମ୍ପୂର୍ଣ୍ଣ ହେବାକୁ ପ୍ରାୟ ଆହୁରି ଏକ ଶତାବ୍ଦୀ ସମୟ ଲାଗିବ । ଏହାବ୍ୟତୀତ ସହରାଞ୍ଚଳରେ ୧୦-୫୪ ନିୟୁତ ଅସ୍ଥାୟୀ ଗୃହର ପାଇଖାନା ବ୍ୟବସ୍ଥା ନାହିଁ । ଜନସଂଖ୍ୟାର ମାତ୍ର ଶତକଡ଼ା ୨୦ ଭାଗ ଲୋକ ସହରାଞ୍ଚଳରେ ବସବାସ କରନ୍ତି ।

ଭାରତ ସରକାର ପାନୀୟଜଳ ଯୋଗାଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଛନ୍ତି । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ଏ ବାବଦରେ ୪୯ କୋଟି ଟଙ୍କାର ବ୍ୟୟବରାଦ ସ୍ଥିର ହୋଇଥିବା ସ୍ଥଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ବେଳକୁ ତାହାକୁ

ବୃଦ୍ଧି କରାଯାଇ ୪୧୭୭ କୋଟି ୬୧ ଲକ୍ଷ କରଯାଉଛି । ମାତ୍ର କଥିତ ଦଶନ୍ଧିର ନିର୍ଦ୍ଧାରିତ ଲକ୍ଷ୍ୟ ହାସଲ କରିବା ପାଇଁ ୧୪,୭୦୦୦ କୋଟି ଟଙ୍କାର ପ୍ରୟୋଜନ ହେବ । ପ୍ରତି ହଜାର ଲୋକପିଛା ପାଣିକଳର ସଂଖ୍ୟା ଡାକ୍ତରଖାନାର ଶଯ୍ୟାସଂଖ୍ୟା ଅପେକ୍ଷା ଅଧିକ ହେବା ହେଉଛି ଏକ ସ୍ୱାସ୍ଥ୍ୟକର ପରିମଳ ବ୍ୟବସ୍ଥାର ସଙ୍କେତ ବୋଲି ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ୧୯୮୦ ମସିହା ସାଧାରଣ ବୈଠକରେ ଡାଇରେକ୍ଟର ଜେନେରାଲ ଡଃ ହାଫ୍‌ଦାନ ମହ୍ଲର ପ୍ରକାଶ କରିଛନ୍ତି । ତେଣୁ ରୋଗୀ ଡାକ୍ତରଖାନା ଯିବା ଆଗରୁ ପ୍ରାଥମିକ ବ୍ୟବସ୍ଥା ଗ୍ରହଣ ପାଇଁ ସତର୍କ ରହିବା ଦରକାର ।

ନିର୍ଦ୍ଧାରିତ ଦଶନ୍ଧିରେ ପାନୀୟ ଜଳ ସମସ୍ୟା ଦୂରୀକରଣ ନିମନ୍ତେ ଜାତିସଂଘ ପକ୍ଷରୁ ବୈଷୟିକ, ଆର୍ଥିକ ଏବଂ ବୌଦ୍ଧିକ ସହାୟତା ମିଳୁଥିଲେ ମଧ୍ୟ ଏହାର ଲକ୍ଷ୍ୟ ହାସଲ କରିବା ଦିଗରେ ସବୁ ସ୍ତରରେ ଜନସାଧାରଣ ବିଶେଷକରି ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସାହାଯ୍ୟ କରିବା ଉଚିତ ବୋଲି ଭାରତ ସରକାରଙ୍କ ବିବରଣୀରୁ ପ୍ରକାଶ ।

ଏ କ୍ଷେତ୍ରରେ ମହିଳାମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ମହିଳାମାନେ ପରିବାର ପାଇଁ ଜଳ ସଂଗ୍ରହ କରନ୍ତି ତଥା ସ୍ୱ ସ୍ୱ ପରିବାରର ସ୍ୱାସ୍ଥ୍ୟ ସମସ୍ୟାରେ ସେମାନେ ଜଡ଼ିତ ଥାଆନ୍ତି । ତେଣୁ ଏହି ଦଶନ୍ଧିର ସଫଳତା ପାଇଁ ସେମାନଙ୍କର ସହଯୋଗ ମଧ୍ୟ ଅପରିହାର୍ଯ୍ୟ । ସେମାନେ ନିର୍ମଳ ପାନୀୟଜଳ ଓ ଗୋଷ୍ଠୀ ପରିମଳ ବ୍ୟବସ୍ଥା ସମ୍ପର୍କରେ ସଚେତନ ହେବା ଆବଶ୍ୟକ ।

ପରିମଳ ବ୍ୟବସ୍ଥାକୁ ସୁସଂଗଠିତ କରିବା ଦିଗରେ ସରକାରୀ ଢଳ ସହିତ ସ୍ଥାନୀୟ ଲୋକଙ୍କର ସହଯୋଗ ଏକାନ୍ତ କାମ୍ୟ ।

ତେଣୁ ପାନୀୟଜଳ ଯୋଗାଣ ବ୍ୟବସ୍ଥାକୁ ଉନ୍ନତି ପାଇଁ ସ୍ୱାସ୍ଥ୍ୟଶିକ୍ଷା ଅଭିଯାନ, ବ୍ୟକ୍ତିଗତ ସ୍ୱାସ୍ଥ୍ୟର ଯତ୍ନ, ଜଳର ସଦୁପଯୋଗ, ଆବର୍ଜନା ନିଷ୍କାସନ ପ୍ରତି ଦୃଷ୍ଟିଦେବାକୁ ହେବ ଏବଂ ଏଥିରେ ଜନସାଧାରଣଙ୍କ ସକ୍ରିୟ ସହଯୋଗ ଆବଶ୍ୟକ ।

**କହିଲ ଦେଖି ???**

୧—ଗୋଟିଏ ପାତ୍ରରେ କିଛି ଜଳ ଅଛି ଏବଂ ସେଥିରେ ଖଣ୍ଡେ ବରଫ ଭାସୁଛି, ଯଦି ବରଫଟି ସମ୍ପୂର୍ଣ୍ଣ ତରଳିଯାଏ, ତେବେ ପାଣିର ସ୍ତରରେ କି ପରିବର୍ତ୍ତନ ହେବ ?

୨—ସମଗ୍ଧପ ବିଶିଷ୍ଟ ବିନ୍ଦୁଗୁଡ଼ିକୁ ଯୋଗ କରୁଥିବା ରେଖାର ନାମ କ'ଣ ?

୩—ବାୟୁମଣ୍ଡଳର ଶୀର୍ଷତମ ସ୍ତରର ନାମ କ'ଣ ?

୪—ମଣିଷ ଶରୀରର କୋଷରେ କେତେ ଯୋଡ଼ା କ୍ରୋମୋଜୋମ ଅଛି ?

୫—ନିଶ୍ୱାସ ତ୍ୟାଗ କରୁଥିବା ବାୟୁରେ ଯବକ୍ଷାରଜାନ କେତେଭାଗ ଥାଏ ?

୬—ଆଖିର ଧଳାଂଶଟିର ନାମ କ'ଣ ?

୭—କେଉଁ ପ୍ରାଣୀର ହାଡ଼ ନାହିଁ ?

୮—ସୂର୍ଯ୍ୟର ବ୍ୟାସ ପୃଥିବୀର ବ୍ୟାସଠାରୁ କେତେଗୁଣ ବଡ଼ ?

୯—କ୍ଲୋରୋମାଇସିଟିନ୍ କେଉଁ ରୋଗପାଇଁ ବ୍ୟବହାର କରାଯାଏ ?

୧୦—କେଉଁଗ୍ରହ ପୃଥିବୀକୁ ନାଲି ଦେଖାଯାଏ ?

୧୧—ରସାୟନିକ ପ୍ରକ୍ରିୟାରେ କାଟାଲିଷ୍ଟର କାର୍ଯ୍ୟ କ'ଣ ?

୧୨—ଚକ୍ଷୁର ରେଟିନାରେ ସୃଷ୍ଟିହେଉଥିବା ପ୍ରତିବିମ୍ବର ବିଶେଷତ୍ୱ କ'ଣ ?

୧୩—କେଉଁ ପ୍ରଣାଳୀରେ ମଞ୍ଜିବିହୀନ ଫଳ ପ୍ରସ୍ତୁତ ହୁଏ ?

୧୪—ଗ୍ରାମୋଫୋନ କିଏ ଆବିଷ୍କାର କରିଥିଲେ ?

୧୫—ଆଳୁର ଆଖି ତା'ର କେଉଁ ଅଂଶରେ ଥାଏ ?

୧୬—ଫୋଟନର ସ୍ପନ୍ଦନହାର ବଢ଼ିଲେ ଏହାର ଶକ୍ତିରେ କି ପ୍ରଭାବ ପଡ଼େ ?

୧୭—ଆଲୋକ ବାୟୁରୁ କାଚ ଭିତରକୁ ପ୍ରବେଶ କଲେ ଏହାର ଫ୍ରିକ୍ୱେନ୍‌ସିରେ କି ପରିବର୍ତ୍ତନ ଲକ୍ଷ୍ୟ କରଯାଏ ?

୧୮—ମଣିଷର ହାଡ଼ ଓ ଦାନ୍ତ କେଉଁଥିରେ ତିଆରି ?

୧୯—କ୍ରୋନମିଟର କାହାକୁ କୁହାଯାଏ ?

୨୦—ପୃଥିବୀରେ ବାୟୁମଣ୍ଡଳ ନ ଥିଲେ ଦିବାଲୋକରେ କି ପରିବର୍ତ୍ତନ ହେବ ?

### ଉତ୍ତର

୧—ଜଳପତନ ସମାନ ରହିବ ।
୨—ଆଇସୋନାର
୩—ଏକଓସୋଷ୍ଟିୟନ
୪—ପଚିଶ ଘୋଡ଼ା
୫—ଶତକଡ଼ା ୨୮
୬—ଚକ୍ଷୁପଟଳ
୭—ଭିଆଁ
୮—୧୦୦ ଗୁଣ
୯—ଟାଇଫଏଡ୍
୧୦—ମଙ୍ଗଳ
୧୧—ରାସାୟନିକ ପ୍ରକ୍ରିୟାର ବେଗରେ ଏହା ପରିବର୍ତ୍ତନ ଆଣେ ।
୧୨—ବାସ୍ତବ ଏବଂ ଓଲଟା
୧୩—ପାଥାନୋ ଜେମିଥିସ୍
୧୪—ଏଡିସନ୍
୧୫—ବଂଶବୃଦ୍ଧି
୧୬—ଶକ୍ତି ବୃଦ୍ଧି ହୁଏ
୧୭—କୌଣସି ପରିବର୍ତ୍ତନ ହୁଏନାହିଁ
୧୮—କାଲସିୟମ ଫସଫେଟ
୧୯—ସମୟ ମାପିବା ଯନ୍ତ୍ର
୨୦—ଦିବାଲୋକର ସମୟ କମିଯିବ ।

### ଆପଣ କେତେ ବୁଦ୍ଧିମାନ ?

୧—ନାଗାର୍ଜୁନ, ଯିଏକି ଜଣେ ବୁଦ୍ଧ ସନ୍ନ୍ୟାସୀ ଥିଲେ, ସେ କେଉଁ କାର୍ଯ୍ୟପାଇଁ ପ୍ରସିଦ୍ଧ ଥିଲେ ?

(କ) ଗଣିତଜ୍ଞ (ଖ) ଚିକିତ୍ସକ (ଗ) ରସାୟନବିତ (ଘ) ଜ୍ୟୋତିଷବିତ୍

୨—ଓଡ଼ିଶାର ରାଜ୍ୟପାଳ କିଏ ?

(କ) ଏଚ. ଜେ. ଏଚ. ତାହେଲଖାନ
(ଖ) ବି. ଏନ. ପାଣ୍ଡେ
(ଗ) ବି ଡ଼ି. ପାଣ୍ଡେ
(ଘ) ଏମାନଙ୍କ ମଧ୍ୟରୁ କେହି ନୁହଁନ୍ତି ।

୩—ମଣ୍ଡଳ କମିଶନ କରିଥିବା ସୁପାରିଶଗୁଡ଼ିକ ମଧ୍ୟରୁ କେଉଁଟି ଗୁରୁତ୍ୱପୂର୍ଣ୍ଣ ସଂରକ୍ଷଣ ପାଇଁ କରଯାଇଛି ?

(କ) ନାରୀ (ଖ) ଯେଉଁ ଆର୍ଥିକ ଦୁର୍ବଳ ଶ୍ରେଣୀର (ଗ) ଧର୍ମ ସଂପ୍ରଦାୟର ଲୋକ (ଘ) ତପସିଲଭୁକ୍ତ ଜାତି ଏବଂ ଉପଜାତି ।

୪—ଟ୍ରପିକ କ୍ୟାନସର (Tropic Cancer)ର ଗବେଷଣାଗାର କେଉଁଠି ?

(କ) କାକିନଡ଼ା (ଖ) କାଲିକଟ (ଗ) କାଣ୍ଡିଆ (ଘ) ଲକ୍ଷ୍ନୌ

୫—ଭାରତର ପ୍ରଥମ ଜନଗଣନା କେବେ ଆରମ୍ଭ ହୋଇଥିଲା ?

(କ) ୧୮୭୨ (ଖ) ୧୮୯୨ (ଗ) ୧୯୦୧ (ଘ) ୧୯୨୧

୬—ଏକ ଭାରତୀୟ ମୁଦ୍ରା ଏବେ କେଉଁ ଦେଶର ଟଙ୍କା ସହ ସମାନ ?
(କ) ୟୁ. ଏସ୍‌. ଡଲାର (ଖ) A basket of Currencies (ଗ) ସୁନା ଏବଂ ଏସ୍‌. ଡି. ଆର (ଘ) ପାଉଣ୍ଡ ଷ୍ଟର୍ଲିଂ
୭—କିଏ ରକ୍ତ ଜମାଟ ବାନ୍ଧିବାରେ ସାହାଯ୍ୟ କରେ ?
(କ) ଭିଟାମିନ 'ଏ' (ଖ) ଭିଟାମିନ୍ 'ବି' (ଗ) ଭିଟାମିନ 'ଡି' (ଘ) ଭିଟାମିନ୍ 'କେ'

୮—ୟୁନାଇଟେଡ୍ ନେସନର ସେକ୍ରେଟାରୀ ଜେନେରାଲ କେତେବର୍ଷ ପାଇଁ ନିଯୁକ୍ତି ପାଆନ୍ତି ?
(କ) ତିନି ବର୍ଷ (ଖ) ଚାରି ବର୍ଷ (ଗ) ପାଞ୍ଚବର୍ଷ (ଘ) ଛଅ ବର୍ଷ
୯—ଇଲେକଟ୍ରିକ୍ ହିଟରର କଏଲ କେଉଁଥିରେ ତିଆରି ?
(କ) ଜିଙ୍କ୍ (ଖ) ବ୍ରାସ (ଗ) କପର (ଘ) ନାଇକ୍ରୋମ
୧୦—ଭାରତ କେବେ ଲିଗ ଅଫ୍ ନେସନ୍ସ (League of Nations)ର ସଭ୍ୟ ହେଲା ?
(କ) ୧୯୨୯ (ଖ) ୧୯୩୬ (ଗ) ୧୯୨୧ (ଘ) ୧୯୩୪
୧୧—ହିନ୍ଦୀ ପରେ କେଉଁ ଭାଷା ମାତୃଭାଷା ଭାବେ ଅଧିକ ଲୋକଙ୍କଦ୍ୱାରା ବ୍ୟବହୃତ ହୁଏ ?
(କ) କନ୍ନଡ଼ (ଖ) ତେଲଗୁ (ଗ) ବଙ୍ଗଳା (ଘ) ତାମିଲ
୧୨—ବିକ୍ରମାଦିତ୍ୟଙ୍କ ପାଖରେ ଥିବା ନବରତ୍ନଙ୍କ ମଧ୍ୟରୁ ତଳେ ଚାରିଜଣଙ୍କ ନାମ ଦିଆଗଲା, ଏମାନଙ୍କ ମଧ୍ୟରୁ କେଉଁ ଜଣକ ଜଣେ ଚିକିତ୍ସକ ଥିଲେ ?
(କ) ବରାହମିହିର (ଖ) ଧନ୍ୱନ୍ତରି (ଗ) କାଳିଦାସ (ଘ) କ୍ଷପଣକ
୧୩—ରେଳବାଇ ଷ୍ଟାଫ୍ କଲେଜ କେଉଁଠାରେ ଅବସ୍ଥିତ ?
(କ) ପୁନା (ଖ) ବରୋଦର (ଗ) ଜମାଲପୁର (ଘ) ସିକନ୍ଦରାବାଦ
୧୪—ଆଇ. ସି. ଏ. ଓ. (I. C. A. O.)ର ସଦର ମହକୁମା କେଉଁଠାରେ ଅବସ୍ଥିତ ?
(କ) ରୋମ (ଖ) ବ୍ରୁସେଲସ (ଗ) ଜେନେଭା (ଘ) ମଣ୍ଟ୍ରିଲ
୧୫—ଭାରତର ମୁଖ୍ୟ ରାଜସ୍ୱ କ'ଣ ?
(କ) ମଟର ଟିକସ (ଖ) ପ୍ରଫେସନ ଟିକସ ଏବଂ ବିଲଡ଼ିଂ ଟିକସ (ଗ) ଭୂରାଜସ୍ୱ ଏବଂ ବିକ୍ରି ଟିକସ (ଘ) ଆୟକର ଏବଂ ଏକସାଇଜ ଡ୍ୟୁଟି

**ଉତ୍ତର**

୧। ଗ—ରଘୁନାୟକବିନ୍ଦ୍
୨। ଖ—ବି, ଏନ୍. ପାଣ୍ଡେ
୩। ଗ—ତପସିଲଭୁକ୍ତ ଜାତି ଏବଂ ଉପଜାତି
୪। ଗ—କାଣ୍ଡିଆ
୫। କ—୧୮୭୨
୬। ଘ—ପାଉଣ୍ଡ ଷ୍ଟର୍ଲିଂ
୭। ଘ—ଭିଟାମିନ୍ କେ.
୮। ଗ—ପାଞ୍ଚ ବର୍ଷ
୯। ଘ—ନାଇକ୍ରୋମ
୧୦। ଗ—୧୯୨୧
୧୧। ଖ—ତେଲଗୁ
୧୨। ଖ—ଧନ୍ୱନ୍ତରୀ
୧୩। ଖ—ବରୋଦର
୧୪। ଘ—ମଣ୍ଟ୍ରିଲ
୧୫। ଗ—ଭୂରାଜସ୍ୱ ଓ ବିକ୍ରିକର

## ପୁରୁଷମାନଙ୍କ ଅପେକ୍ଷା ନାରୀ ବେଶୀ ପରିଶ୍ରମ କରନ୍ତି

ସମଗ୍ର ପୃଥିବୀରେ ଯେତିକି ଘଣ୍ଟା କାମ ହୁଏ, ତା'ର ଦୁଇ ତୃତୀୟାଂଶ ସମୟର କାମ ମହିଳାମାନେ କରିଥାନ୍ତି ବୋଲି ସଂପ୍ରତି ଏକ ସମୀକ୍ଷାରୁ ଜଣାଯାଇଛି । ବିକାଶମୁଖୀ ଦେଶମାନଙ୍କରେ ଜନସଂଖ୍ୟାର ଶତକଡ଼ା ୫୨ ଭାଗ ହେଉଛନ୍ତି ମହିଳା । ଗୃହରେ ଖାଦ୍ୟ ପ୍ରସ୍ତୁତି କ୍ଷେତ୍ରରେ ସେମାନଙ୍କ ଦାୟିତ୍ୱ ଓ କାମ ପୁରୁଷଙ୍କଠାରୁ ଯଥେଷ୍ଟ ବେଶୀ । ବହୁ ପରିବାରରେ ଏଇ ମହିଳା ବା ନାରୀମାନେ ହେଉଛନ୍ତି ସର୍ବେସର୍ବା ।

ଗ୍ରାମ୍ୟ ମହିଳା ହାତରେ ପୃଥିବୀର ପ୍ରାୟ ଅଧାଅଧି ଫସଲ ଫଳେ । ଆଫ୍ରିକାର କେତେକ ଦେଶରେ କୃଷିକାମ ପ୍ରାୟ ନାରୀମାନେ ହିଁ ଉଠାଇଥାନ୍ତି । କ୍ଷେତରେ କାମ କରୁଥିବା ଶ୍ରମିକମାନଙ୍କ ମଧ୍ୟରୁ ନାରୀ ଶ୍ରମିକଙ୍କ ସଂଖ୍ୟା ଶତକଡ଼ା ୯୦ ଭାଗ । ତଳି ଦେଇବାଠାରୁ ଆରମ୍ଭକରି ଫସଲ କାଟିବା ପର୍ଯ୍ୟନ୍ତ ସମସ୍ତ କାମ ସେମାନେ କରନ୍ତି । ଅଥଚ ସେମାନଙ୍କ ମଜୁରୀର ହାର ପୁରୁଷଙ୍କଠାରୁ ଯଥେଷ୍ଟ କମ୍ ।

ବେଶୀ କାମକଲେ ମଧ୍ୟ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦିଆଯାଉନାହିଁ ବୋଲି ଉକ୍ତ ସମୀକ୍ଷାରେ ଉଲ୍ଲେଖ କରଯାଇଛି । ପୃଥିବୀରେ ମୋଟ ଆୟର ମାତ୍ର ଦଶ ଭାଗର ଏକ ଭାଗ ସେମାନେ ପାଇଥାନ୍ତି । ପୃଥିବୀର ମାତ୍ର ଏକ ଶତାଂଶ ସମ୍ପତ୍ତିର ମାଲିକାନା ସେମାନଙ୍କୁ ଦିଆଯାଏ । ଶିକ୍ଷାର ସୁଯୋଗ ମଧ୍ୟ ସେମାନଙ୍କପାଇଁ କମ୍ । କାରଣ ପୃଥିବୀରେ ଯେତେ ନିରକ୍ଷର ଅଛନ୍ତି, ସେମାନଙ୍କ ମଧ୍ୟରୁ ବେଶୀ ସଂଖ୍ୟକ ନିରକ୍ଷର ହେଉଛନ୍ତି ଏଇ ନାରୀମାନେ । ସେଇପରି ଗୋଟିଏ ପରିବାରରେ ଖର୍ଚ୍ଚ ହେଉଥିବା ଖାଦ୍ୟ ସାମଗ୍ରୀ ମଧ୍ୟରୁ ମହିଳାମାନେ ପ୍ରାୟ ଖୁବ୍ କମ୍ ଅଂଶରେ ଖାଇବାକୁ ପାଇଥାନ୍ତି । ଫଳରେ ସେମାନଙ୍କଠାରେ ପୁଷ୍ଟିସାରର ଅଭାବ ଦେଖାଯିବା ଲକ୍ଷ୍ୟ କରଯାଏ ।

## ଉତ୍ତରକୁ ମୁହଁ ନ ହେଲେ ସେ ଶୋଉ ନଥିଲେ

ଆମେ ବିଶ୍ରାମ ନେବାପାଇଁ ଶୋଇଥାଉ । ଏଣୁ ଦରକାର ସମୟରେ ଯେଉଁ ପଟକୁ ହେଲେ ମଧ୍ୟ ବିଛଣା ପାରି ଆମେ ଶୋଇଯିବାକୁ ପଶ୍ଚାତ୍‌ପଦ ହେଉନାହିଁ ; ମାତ୍ର ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ଚାର୍ଲସ ଡିକ୍‌ସନ ନାମକ ଜଣେ ପ୍ରସିଦ୍ଧ ଇଂରାଜୀ ଲେଖକ ତାଙ୍କର ଯାବଜ୍ଜୀବନ କେବଳ ଉତ୍ତରକୁ ମୁଣ୍ଡକରି ଶୋଉଥିଲେ । ତାଙ୍କ ବିଛଣାର ମୁଣ୍ଡ ଉତ୍ତରକୁ ନ ହେଲେ ସେ ଶୋଉନଥିଲେ ।

## ବିଶ୍ୱର ବୃହତ୍ତମ ହୀରା

ହୀରା ଏକ ମୂଲ୍ୟବାନ ବସ୍ତୁ । ଏହା ମଧ୍ୟ ବିଭିନ୍ନ ପ୍ରକାର ରହିଛି । ତେବେ ନୀଳ ହୀରା ସବୁଠାରୁ ଅଧିକ ମୂଲ୍ୟବାନ । ଏଇ ନୀଳ ହୀରାର ଖଣ୍ଡ ଆମେରିକାର ରାଜଧାନୀ ୱାସିଂଟନ ଅନ୍ତର୍ଗତ ସ୍ମିଥୋ ହୋନିଆନଠାରେ ରହିଛି । ଏହାର ଓଜନ ୪୪.୪ କ୍ୟାରଟ ।

## ସତୀଦାହ ପ୍ରଥା ଏବେ ବି ଜୀବିତ !

ସତୀଦାହ ପ୍ରଥା କେବଳ ରାଜପୁତମାନଙ୍କର ଏକ ବିଶେଷ କାର୍ଯ୍ୟ ; ମାତ୍ର ଆଇନଗତ ଭାବେ ଏହା ଏବେ ଉଠିଯାଇଛି ; କିନ୍ତୁ ରାଜସ୍ଥାନରେ ଗ୍ରାମାଞ୍ଚଳରେ ଏବେ ବି ଏଇ ପ୍ରଥା ଜୀବିତ । ଏବେ ୭୨ ବର୍ଷ ବୟସ୍କା ଜଣେ ରାଜପୁତ ରମଣୀ ଶ୍ରୀମତୀ ସୋନା କନୱର ନିଜ ସ୍ୱାମୀଙ୍କ ଚିତାନଳରେ ଝାମ୍ପଦେଇ ନିଜକୁ 'ସତୀ' ବୋଲି ସାବ୍ୟସ୍ତ କରିଛନ୍ତି । ଏଇ ଘଟଣାଟି ଘଟିଛି ରାଜସ୍ଥାନର ନିମ୍ନିଦି କୋଠରିଆ ଗ୍ରାମରେ ।

## ୧୧୪ ବର୍ଷ ଜେଲ ଦଣ୍ଡ

ବର୍ଷେ ନୁହେଁ, ଦୁଇ ବର୍ଷ ନୁହେଁ, ପୁରା ଏକଶହ ୧୪ ବର୍ଷ । ଏହା ହୁଏତ ବିଶ୍ୱାସ ନହୋଇପାରେ ; ମାତ୍ର ଘଟଣାଟି ସତ । ଆମେରିକାର ମିଆମୀ ଜିଲ୍ଲାର ଜଣେ ୧୩ ବର୍ଷ ବୟସ୍କା ବାଳିକା ଏବେ ପୋଷ୍ଟେଲ ନିକର ୮୭ ବର୍ଷ ବୟସ୍କା ଜଣେ ୧୩ ବର୍ଷ ବୟସ୍କା ବାଳିକା ଏବେ ପୋଷ୍ଟେଲ ନିକର ୮୭ ବର୍ଷ ବୟସ୍କା ଜଣେ ସମ୍ପର୍କୀୟଙ୍କୁ ହତ୍ୟା କରିଥିବାରୁ ଅଦାଲତ ପୋଷ୍ଟେଲଙ୍କୁ ୧୧୪ ବର୍ଷ ଜେଲ ଦଣ୍ଡରେ ଦଣ୍ଡିତ କରିଛି ।

## ପଶୁମାନଙ୍କ ବ୍ୟବହାରରୁ ଭୂମିକମ୍ପର ସୂଚନା ମିଳିପାରେ ।

ଚୀନ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ ଏକ ପୁସ୍ତକରେ କୁହାଯାଇଛି ଯେ, ଆମର ଗୃହପାଳିତ ପଶୁ ତଥା ଜଙ୍ଗଲରେ ବାସକରୁଥିବା ପ୍ରାଣୀମାନଙ୍କ ବ୍ୟବହାରରୁ ଭୂମିକମ୍ପ ହେବା ନ ହେବାର ସୂଚନା ଆମେ ପାଇପାରିବା, ଯଦି ନିକଟରେ ଭୂମିକମ୍ପ ହେବାର ଥାଏ—ତା'ହେଲେ ଗାଈଗୋରୁମାନେ ପଘା ଛିଣ୍ଡାଇ ଏକମୁହାଁ ହୋଇ ଦୌଡ଼ିବାରେ ଲାଗନ୍ତି । ମୂଷାମାନେ ଗାତରୁ ବାହାରିପଡ଼ି ସତ୍ତ୍ୱର ଏଣେ ତେଣେ ବୁଲାବୁଲି ଆରମ୍ଭ କରିଦିଅନ୍ତି । ସାପମାନେ ମଧ୍ୟ ଗାତ ମଧ୍ୟରୁ ବାହାରି ଆସନ୍ତି । ବଣରେ ମୟୂର ରଡ଼ିଛାଡ଼େ, ହରିଣମାନେ କାନକୁ ଠିଆକରି ଠିଆହୋଇ ରୁହନ୍ତି । ମାଛମାନେ ପାଣି ମଧ୍ୟରେ ଡିଆଁଡେଇଁ ଆରମ୍ଭ କରିଦିଅନ୍ତି ।

## କଂପ୍ୟୁଟର ବକ୍ତାର ବକ୍ତବ୍ୟକୁ ବୁଝିପାରିବ ।

ଆଜିକାଲି ତ ପ୍ରତ୍ୟେକ କାର୍ଯ୍ୟରେ କଂପ୍ୟୁଟର ବହୁଳ ପ୍ରଚଳନ ହେବାରେ ଲାଗିଲାଣି । ସୋଭିଏତ ବୈଜ୍ଞାନିକମାନେ ଏପରି ଏକ କଂପ୍ୟୁଟର ବାହାର କରିଛନ୍ତି, ଯିଏକି ବିଭିନ୍ନ ବକ୍ତବ୍ୟକୁ ଶୁଣି ତାହାର ସରଳ ଭାବାର୍ଥ ପ୍ରକାଶ କରିପାରିବ ।

## ରକ୍ତଦାନଦ୍ୱାରା ହୃଦରୋଗରୁ ରକ୍ଷା ମିଳେ !

ଡା. ଲିଓପୋଲଡ ଡିଟେନଫାଶ ନାମକ ଜଣେ ଡାକ୍ତର ପ୍ରକାଶ କରିଛନ୍ତି ଯେ, ଯଦି ଜଣେ ସୁସ୍ଥ ସବଳ ବ୍ୟକ୍ତି ପ୍ରତିବର୍ଷ କିଛି କିଛି ରକ୍ତ ଦାନକରେ, ତେବେ ଏହା ଶରୀରପକ୍ଷେ ହିତକାରକ ହୋଇଥାଏ । ଯଥା, ସେଇ ବ୍ୟକ୍ତି ହୃଦରୋଗରୁ ନିଶ୍ଚିତ ଭାବେ ରକ୍ଷା ପାଇଥାଏ । ଏହା ବ୍ୟତୀତ ରକ୍ତଦାନଦ୍ୱାରା ରକ୍ତଚାପ ଠିକ୍ ରହିବା ସଙ୍ଗେ ସଙ୍ଗେ ରକ୍ତ ଅଧିକ ଶୁଦ୍ଧ ହୋଇଥାଏ ।

## ମନୁଷ୍ୟ ଅଙ୍ଗପ୍ରତ୍ୟଙ୍ଗ ପାଇଁ ପ୍ରସ୍ତାବିତ ବଜାର

ଲୋକମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ବଦଳାଇବା ଦରକାର ପଡ଼ିଲେ ଡାକ୍ତରଖାନା ବା ଅନ୍ୟ କୌଣସି ସ୍ଥାନରେ ଏହା ସହଜରେ ଯଥେଷ୍ଟ ପରିମାଣରେ ମିଳିବା ସମ୍ଭବପର ନୁହେଁ । ଏଣୁ ଏହିସବୁ ଅଙ୍ଗପ୍ରତ୍ୟଙ୍ଗ ବିକ୍ରିଲାଗି ଏକ ବଜାର ପ୍ରତିଷ୍ଠାପାଇଁ ବ୍ରିଟିଶ କଲମ୍ବିଆର ଜଣେ ପ୍ରଫେସର ପ୍ରସ୍ତାବ ଦେଇଛନ୍ତି । ଅନ୍ୟମାନଙ୍କ ଦେହରେ ଖଞ୍ଜାହେଲାଭଳି ମନୁଷ୍ୟର ୧୭ଟି ଅଙ୍ଗପ୍ରତ୍ୟଙ୍ଗକୁ ବିଭିନ୍ନ ସ୍ଥାନରୁ ସଂଗ୍ରହ କରସାଇ ଏହି ବଜାରରେ ବିକ୍ରି କରଯିବ ।

## ପିଠିରେ ଯନ୍ତ୍ରଣା ପାଇଁ ବ୍ରିଟେନରେ ବର୍ଷକୁ ୧୯୦ ଲକ୍ଷ କର୍ମ ଦିବସ ନଷ୍ଟ

କ୍ରମାଗତ ଭାବେ ପିଠିପଟେ ହେଉଥିବା ଯନ୍ତ୍ରଣାକୁ ଭଲ କରିବା ହିଁ ଏହି ବର୍ଷର ସବୁଠାରୁ ଉତ୍ସାହଜନକ ଆବିଷ୍କାର । ଏହା ଘୋଷଣା କରିଛନ୍ତି ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟର ଡାକ୍ତରମାନେ ।

ବିଶ୍ୱବିଦ୍ୟାଳୟର ଏକ୍ସପ୍ରେସ ବିଜ୍ଞପ୍ତିରେ ଉଲ୍ଲେଖ କରାଯାଇଛି ଯେ, କ୍ରମାଗତଭାବେ ପିଠିପଟେ ଧୋଳାବିନ୍ଧା ଯନ୍ତ୍ରଣା ଇତ୍ୟାଦି ହେଉଥିବା ସବୁ ରୋଗୀମାନଙ୍କ ମେରୁଦଣ୍ଡରେ ଥିବା ତନ୍ତୁଗୁଡ଼ିକରୁ ପିଞ୍ଜନ ନାମକ ପଦାର୍ଥ ପରିଷ୍କାର ହୋଇପାରେନାହିଁ । ପିଠିପଟେ ଯନ୍ତ୍ରଣା ବ୍ରିଟେନର ଏକ ସାଧାରଣ ଗଣ୍ଠିବାତ ରୋଗ, ପ୍ରତିବର୍ଷ ଏଥିପାଇଁ ୧୯୦ ଲକ୍ଷ ଶ୍ରମ ଦିବସ ନଷ୍ଟ ହୁଏ ବୋଲି ଏଥିରେ ଦର୍ଶାଯାଇଛି ।

## କାନ୍ଦିବାର ଉପକାରିତା

ଡକ୍ଟର ଉଇଲିୟମ ଏଚ. ଫ୍ରେ.ଙ୍କ ମତରେ ନିଃଶ୍ୱାସ, ସ୍ୱେଦ ତଥା ମଳମୂତ୍ର ନିଷ୍କାସନ ପ୍ରଣାଳୀ ଭଳି କ୍ରନ୍ଦନ ମଧ୍ୟ ଶରୀରର ଏକ ବିଷ ନିଷ୍କାସନ ପ୍ରକ୍ରିୟା । ଅତ୍ୟଧିକ ଭାବପ୍ରବଣତା ଯୋଗୁ ମାନସିକ ଚାପ ସୃଷ୍ଟିହୁଏ ଏବଂ ଏହି ଚାପର ପରିଣାମ ସ୍ୱରୂପ ଶରୀରରେ ଘଟିତ ବିଭିନ୍ନ ପ୍ରକ୍ରିୟାରୁ ବିଷାକ୍ତ ରସାୟନିକ ପଦାର୍ଥ ଜମିଯାଏ । ଏହି ବିଷାକ୍ତ ପଦାର୍ଥଗୁଡ଼ିକ କେବଳ ଲୁହ ଆକାରରେ ହିଁ ଝରିଯାଇପାରେ । କୁହାଯାଏ ଯେ, ଦୈନିକ କିଛି କିଛି ଲୁହ ଗଡ଼ାଇପାରିଲେ ଚକ୍ଷୁ ଚିକିତ୍ସକଙ୍କର ଆବଶ୍ୟକ ପଡ଼େନାହିଁ । ଲୁହରେ ଧୋଇହୋଇ ଚକ୍ଷୁ ପରିଷ୍କାର ଓ ଜୀବାଣୁମୁକ୍ତ ହୋଇଯାଉଥିବାରୁ କ୍ରନ୍ଦନ ଏକ ସ୍ୱାଭାବିକ ପ୍ରତିଷେଧକ ମଧ୍ୟ ।

## ନୀଳ ତିମି

ପୃଥିବୀ ପୃଷ୍ଠରେ ଆଜିପର୍ଯ୍ୟନ୍ତ ଦେଖାଦେଇ ଆସିଥିବା ଜୀବଜନ୍ତୁମାନଙ୍କ ମଧ୍ୟରେ ନୀଳ ତିମି ହେଉଛି ସବୁଠାରୁ ବଡ଼ଜୀବ । ଅତୀତରେ ଏଠାରେ ବାସ କରୁଥିବା ଡାଇନୋସାଉରସ ପ୍ରଭୃତି ସରୀସୃପଙ୍କଠାରୁ ମଧ୍ୟ ଏମାନେ ଆକୃତିରେ ବଡ଼ । ଗୋଟିଏ ଗୋଟିଏ ନୀଳତିମିର ଲମ୍ବ ୩୦ ମିଟରରୁ ଊର୍ଦ୍ଧ୍ୱ ଏବଂ ଓଜନ ୧୪୦ ଟନ୍ ପର୍ଯ୍ୟନ୍ତ ହୋଇଥାଏ ।

## ଦୁଗ୍ଧ ଉତ୍ପାଦନ ବୃଦ୍ଧିକାରୀ ହରମୋନ

ଆମେରିକା ଓ ଡେନମାର୍କର ବୈଜ୍ଞାନିକମାନଙ୍କ ମିଳିତ ଗବେଷଣା ଫଳରେ ଏକ ନୂତନ ହରମୋନ ଉଦ୍ଭାବନ କରାଯାଇଛି । ଇଞ୍ଜେକ୍ସନ ମାଧ୍ୟମରେ ଏହାକୁ ଗାଈଙ୍କ ଦେହରେ ପ୍ରବେଶ କରାଇଲେ ସେମାନଙ୍କ ଦୁଗ୍ଧ ଉତ୍ପାଦନ ଶକ୍ତି ଶତକଡ଼ା ୨୦ ଭାଗ ବୃଦ୍ଧି ହୋଇପାରିବ ।

ଏହି ହରମୋନ୍ ଖୁବ୍ ଶୀଘ୍ର ଭାଙ୍ଗିଯିବା ଫଳରେ ଏହାର ସତ୍ତା ଲୋପ ପାଇଯାଉଥିବାରୁ ଉକ୍ତ ହରମୋନ୍ ଇଞ୍ଜେକ୍ସନ ନେଇଥିବା ଗାଈର ଦୁଗ୍ଧ ଖାଇଲେ ତାହା ଲୋକମାନଙ୍କର କୌଣସି କ୍ଷତି କରେ ନାହିଁ ବୋଲି ପରୀକ୍ଷାରୁ ଜଣାପଡ଼ିଛି, ପୁନଶ୍ଚ ଉକ୍ତ ହରମୋନ୍ କ୍ଷୀରରେ ଥିବା ଚର୍ବି ଅଂଶକୁ ଭାଙ୍ଗି ପ୍ରୋଟିନ୍‌ରେ ରୂପାନ୍ତରିତ କରୁଥିବାରୁ ଗୋ ମାଂସର ମାନରେ ମଧ୍ୟ ଉନ୍ନତି ପରିଲକ୍ଷିତ ହୁଏ ।

ବ୍ୟବସାୟିକ ଭିତ୍ତିରେ ଏହାର ବହୁଳ ପ୍ରସାର କରାଗଲେ କୃଷକମାନେ ଉପକୃତ ହେବେ ।

## ମନର ନିୟନ୍ତ୍ରଣକାରୀ ମସ୍ତିଷ୍କର ଅଗ୍ରଭାଗ

ଅଧୁନା ଏକ ଗବେଷଣା ଅନୁଯାୟୀ ଜଣାପଡ଼ିଛି ଯେ, ମଣିଷ ମୁଣ୍ଡ ଖପୁରୀର ଅଗ୍ର ଭାଗରେ ଅବସ୍ଥିତ ଏକ ଉନ୍ନତ ମସ୍ତିଷ୍କ ସାଧାରଣତଃ ମଣିଷର ମନକୁ ଉଚ୍ଚ ଭାବନା ସମ୍ପନ୍ନ କରିଥାଏ । ବାଙ୍ଗାଲୋରର ଜାତୀୟ ମାନସିକ ଚିକିତ୍ସାଳୟର ଅଧ୍ୟାପକ ଡ. ଟି. ଦେଶୀରାଜୁ ତାଙ୍କ ଗବେଷଣା ଦ୍ୱାରା ଜାଣିପାରିଛନ୍ତି ଯେ, ମସ୍ତିଷ୍କର ଅଗ୍ରଭାଗ, ତାର ଉଚ୍ଚତର ବିସ୍ତ୍ରର ଶକ୍ତି ଓ ଉନ୍ନତ ନୈତିକ ମୂଲ୍ୟବୋଧ ପାଇଁ ଦାୟୀ ଅଟେ ।

ଡ. ଦେଶୀରାଜୁ ପି. ଟି. ଆଇର ବିଜ୍ଞାନ ବିଭାଗକୁ କହିଛନ୍ତି ଯେ, ତାଙ୍କର ଗବେଷଣା ମୂଳତଃ ମାଙ୍କଡମାନଙ୍କ ଉପରେ ପର୍ଯ୍ୟବେକ୍ଷିତ । ସେ କୁହନ୍ତି ମଣିଷ ପୂର୍ବ ମସ୍ତିଷ୍କ । ମସ୍ତିଷ୍କର ଅନେକ କାର୍ଯ୍ୟକଳାପର ସଂଯୋଗକାରୀ ଓ ଏହାର ସାଙ୍କଲୀନ କାର୍ଯ୍ୟ ନିୟନ୍ତ୍ରଣକାରୀ ଅଟେ ।

ଏହି ତଥ୍ୟକୁ ଭାରତ ଓ ଭାରତ ବାହାରେ, ଦୁର୍ଘଟଣା ଇତ୍ୟାଦିରେ ଆଂଶିକ ବା ସଂପୂର୍ଣ୍ଣ କ୍ଷତ ମସ୍ତିଷ୍କ ଉପରେ କାର୍ଯ୍ୟ କରୁଥିବା ଅନେକ ବୈଜ୍ଞାନିକ ସମର୍ଥନ କରି-ଅଛନ୍ତି ।

ଡାକ୍ତରୀ ଭାଷାରେ "Pre-fontal cortex" ବୋଲି କୁହାଯାଉଥିବା ମଣିଷ ମସ୍ତିଷ୍କର ଏହିଭାଗ ଯଦ କୌଣସି ପ୍ରକାରେ ଆଘାତ ପ୍ରାପ୍ତ ହୁଏ, ତେବେ ଏହାଦ୍ୱାରା ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱ ମଧ୍ୟ ପରିବର୍ତ୍ତନ ହୋଇଥାଏ । କ୍ଷତର ଗଭୀରତା ଅନୁସାରେ ଏହି ବ୍ୟକ୍ତିତ୍ୱ ପରିବର୍ତ୍ତନ ନିର୍ଭର କରେ ।

ସେ ଦାବୀ କରନ୍ତି, ତାଙ୍କର ଏହି ଗବେଷଣା ଦ୍ୱାରା ସେ ଯେଉଁ ଉନ୍ନତ ଉପାୟ ଉଦ୍ଭାବନ କରିଛନ୍ତି, ତାହାର ମସ୍ତିଷ୍କ ଅସ୍ତ୍ରୋପଚାର ବହୁତ କମ୍ ଖର୍ଚ୍ଚରେ ହୋଇପାରିବ ।

## ପ୍ରଳୟଙ୍କରୀ ବାତ୍ୟାରେ ବଙ୍ଗଳା ଦେଶରେ ୫୫ ହଜାର ଲୋକଙ୍କ ମୃତ୍ୟୁ

ବଙ୍ଗଳା ଦେଶରେ ସାମୁଦ୍ରିକ ଝଡ଼ର ତାଣ୍ଡବଲୀଳାରେ ଅନ୍ୟୁନ ୫୫ ହଜାର ଲୋକ ନିଶ୍ଚିହ୍ନ ହୋଇଯାଇଥିବାର ଆଶଙ୍କା କରାଯାଇଛି । ପ୍ରାୟ ୧୫ ଫୁଟ ଉଚ୍ଚରୁ ଉର୍ଦ୍ଧ୍ୱ ସମୁଦ୍ର ଢେଉ ମାଡ଼ିଆସିବାରୁ ଏକ ହଜାର ପର୍ଯ୍ୟନ୍ତ କ୍ଷୁଦ୍ର ଦ୍ୱୀପ ସଂପୂର୍ଣ୍ଣ ଧୋଇ ହୋଇ-ଯାଇଛି । ସେଥି ମଧ୍ୟରୁ ସନ୍ଦୀପଦ୍ୱୀପ ଅନ୍ୟତମ । ଉପକୂଳବର୍ତ୍ତୀ ଜିଲ୍ଲା ଚଟଗ୍ରାମ, ବରିଶାଲ ଓ ନୂଆଖାଲି ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଛି । ଏହି ଦ୍ୱୀପଟି ସମୁଦ୍ରର କରାଳ କବଳରେ ନିଶ୍ଚିହ୍ନ ହୋଇଯାଇଛି । ଏଠାରେ ବସବାସ କରୁଥିବା ଅଧିବାସୀଙ୍କ ମଧ୍ୟରୁ ୧୦ ହଜାର ମୃତ ଓ ୧୧ ହଜାର ଆହତ ହୋଇଥିବା ପ୍ରକାଶ । ଏହା ଚଳିତ ଦଶନ୍ଧିର ସବୁଠାରୁ ବଡ଼ ଧରଣର ବିପର୍ଯ୍ୟୟ । ସମସ୍ତ ଉପକୂଳବର୍ତ୍ତୀ ଅଞ୍ଚଳର ପ୍ରାୟ ଦୁଇଲକ୍ଷ ୭୦ ହଜାର ଲୋକ ଝଡ଼ ବାତ୍ୟାରେ ଗୃହଶୂନ୍ୟ ହୋଇଛନ୍ତି ।

ଓଡ଼ିଶାର ବାଲେଶ୍ୱର ଉପକୂଳରେ ସୃଷ୍ଟି ହୋଇଥିବା ଲଘୁଚାପ ଗତି ପରିବର୍ତ୍ତନ କରି ବଙ୍ଗଳାଦେଶ ଉପକୂଳରେ ଘନୀଭୂତ ହେବାରୁ ତାହାର ପ୍ରକୋପରେ ସମସ୍ତ ଉପକୂଳବର୍ତ୍ତୀ ଜିଲ୍ଲାରେ ଗତ ୨୪ ମେ ରାତିରୁ ୨୫ ମେ ସକାଳ ପର୍ଯ୍ୟନ୍ତ ଖଣ୍ଡପ୍ରଳୟ

ସୃଷ୍ଟି ହୋଇଥିଲା । ମୃତ୍ୟୁ ସଂଖ୍ୟା ୨୦ ହଜାର ବୋଲି ସରକାରୀ ଭାବେ କୁହାଯାଉଥିଲେ ମଧ୍ୟ ତାହା ୫୦ ହଜାର ବୋଲି ବେସରକାରୀ ଭାବେ କୁହାଯାଇଛି । ଚଟ୍ଟଗ୍ରାମ, ବରିସାଲ ଓ ନୂଆଖାଲି ଜିଲ୍ଲାର ପ୍ରାୟ ଏକହଜାର ପର୍ଯ୍ୟନ୍ତ କ୍ଷୁଦ୍ର ଦ୍ୱୀପକୁ ସମୁଦ୍ର ମାଡ଼ିଆସିବାରୁ ବିପୁଳ ଧନସମ୍ପତ୍ତି କ୍ଷତି ହେବା ସଙ୍ଗେ ସଙ୍ଗେ ହଜାର ହଜାର ଲୋକଙ୍କ ମୃତ୍ୟୁ ଘଟିଛି ।

ବଙ୍ଗଳାଦେଶର ଦକ୍ଷିଣାଞ୍ଚଳ ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ସାମୁଦ୍ରିକ ଝଡ଼ର ପ୍ରକୋପ ସବୁଠାରୁ ଅଧିକ । ସମୁଦ୍ର ଢେଉ ପାହାଡ଼ ଭଳି ମାଡ଼ିଆସିବାରୁ ଏହି ଅଞ୍ଚଳର ଅନ୍ୟୁନ୍ ଦୁଇଲକ୍ଷ ୨୦ ହଜାର ଲୋକ ଗୃହଶୂନ୍ୟ ହୋଇପଡ଼ିଛନ୍ତି । ମତ୍ସ୍ୟଜୀବୀମାନେ ବସବାସ କରୁଥିବା ମଦଦ୍ୱୀପଟି ସମୁଦ୍ର ଗର୍ଭରେ ସଂପୂର୍ଣ୍ଣ ରୂପେ ନିଶ୍ଚିହ୍ନ ହୋଇଯାଇଛି । ଏଠାରେ ୧୦ ହଜାର ଲୋକଙ୍କ ମୃତ୍ୟୁ ଘଟିଥିବାବେଳେ ୧୧ ହଜାର ଲୋକ ଆହତ ହୋଇଛନ୍ତି ।

ସମୁଦ୍ର ଓ ନଦୀ ଗର୍ଭରେ ଶହ ଶହ ଲୋକଙ୍କ ଶବ ଭାସୁଛି । ଏହି ବିପର୍ଯ୍ୟୟ ଏଭଳି ଏକ ବିସ୍ତୃତ ଅଞ୍ଚଳରେ ହୋଇଛି ଯେ, ଏକକାଳୀନ ସେ ସମସ୍ତ ଅଞ୍ଚଳରେ ଉଦ୍ଧାର କାର୍ଯ୍ୟ ଚଳାଇବା ସମ୍ଭବ ହେଉ ନାହିଁ ।

## ଫିଲ୍ମୋତ୍ସବ-୮୬ ହାଇଦ୍ରାବାଦରେ ଅନୁଷ୍ଠିତ ହେବ

ଭାରତର ଏକାଦଶ ଅନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ "ଫିଲ୍ମୋତ୍ସବ-୮୬ ପ୍ରଥମ ଥର ପାଇଁ ହାଇଦ୍ରାବାଦ ସହରରେ ୧୯୮୬ ଜାନୁୟାରୀ ୧୦ ତାରିଖରୁ ୨୪ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବ ।

ଆନ୍ଧ୍ର ସରକାର ଓ ଚଳଚ୍ଚିତ୍ର ଶିଳ୍ପର ସହଯୋଗରେ ନ୍ୟାସନାଲ ଫିଲ୍ମ ଡେଭଲପ୍‌ମେଣ୍ଟ କର୍ପୋରେସନ ପକ୍ଷରୁ ଏ ଉତ୍ସବ ଅନୁଷ୍ଠିତ ହେବ ।

ଏନ. ଏଫ୍. ଡି. ସି.ର ଚେୟାରମ୍ୟାନ ହୃଷିକେଶ ମୁଖର୍ଜୀ ଓ ଆନ୍ଧ୍ରପ୍ରଦେଶ ମୁଖ୍ୟମନ୍ତ୍ରୀ ଏନ. ଟି. ରମ ରାଓଙ୍କ ମଧ୍ୟରେ ଏ ସମ୍ପର୍କରେ କଥାବାର୍ତ୍ତା ସରିଛି ।

## ଗାଣିତିକ ସମସ୍ୟାର ସମାଧାନ ପାଇଁ କଂପ୍ୟୁଟର

୨୮ ବର୍ଷ ବୟସ୍କ ଭାରତୀୟ ଗଣିତଜ୍ଞ ଡକ୍ଟର ନରେନ୍ଦ୍ର କର୍ମକାର ଏକ ନୂତନ ପ୍ରକାର ଗଣିତ ପାଇଁ କଂପ୍ୟୁଟର ତିଆରି କରିବାକୁ ସକ୍ଷମ ହୋଇପାରିଛନ୍ତି । ଏ ସମ୍ପର୍କୀୟ ଏକ ବିବରଣୀ ପ୍ରକାଶିତ ହୋଇଛି "ନ୍ୟୁୟର୍କ ଟାଇମସ"ର ପ୍ରଥମ ପୃଷ୍ଠାରେ ଡକ୍ଟର କର୍ମକାର ସଂପ୍ରତି "ବେଲ ଲାବୋରେଟରୀ"ରେ ଡକ୍ଟର ରୋନାଲଡ ଏଲ, ଗ୍ରାନାମଙ୍କ ଅଧୀନରେ କାର୍ଯ୍ୟ କରୁଛନ୍ତି ।

ଏଥିରେ ଦର୍ଶାଯାଇଛି ଯେ, କର୍ମକାରଙ୍କ ଦ୍ୱାରା ଆବିଷ୍କୃତ ହୋଇଥିବା ଏହି କଂପ୍ୟୁଟର ଗୋଟିଏ ସେକେଣ୍ଡରେ ପ୍ରାୟ ପଚାଶ ହଜାର ଅଙ୍କ ବିଶିଷ୍ଟ ଯେ କୌଣସି ପ୍ରକାର ସମସ୍ୟାକୁ ସମାଧାନ କରିବାପାଇଁ ସକ୍ଷମ ହୋଇପାରିବ । ଏହି ସମ୍ବାଦପତ୍ରରେ ଆହୁରି ମଧ୍ୟ ପ୍ରକାଶ ପାଉଛି ଯେ, ଯଦି କର୍ମକାରଙ୍କ ଏହି ନୂତନ ଯନ୍ତ୍ର ସଫଳ ଭାବେ କାର୍ଯ୍ୟ କରେ ତେବେ ବହୁ ଶ୍ରମ ଏବଂ ସମୟ ବଞ୍ଚା ଯାଇପାରିବ ।

## ନୂତନ ଉପାୟରେ କ୍ୟାନସର ରୋଗର ଚିକିତ୍ସା ପାଇଁ ନୋବେଲ ପୁରସ୍କାର

ଜର୍ମାନୀର ବିଶିଷ୍ଟ ଇମ୍ୟୁନୋଲୋଜିଷ୍ଟ ଜର୍ଜ କୋହ୍ଲର ଏବଂ ଡେନମାର୍କର ପ୍ରଫେସର ନିଲ୍ସଂଜର୍ଣ୍ଣେ ଏବଂ ବ୍ରିଟେନ୍‌ର ଫିଜର ମିଲଷ୍ଟେନ୍ ଚଳିତ ବର୍ଷ ଚିକିତ୍ସା

ଶାସ୍ତ୍ରରେ ନୋବେଲ ପୁରସ୍କାର ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଏଇ ତିନି ଚିକିତ୍ସା ବିଜ୍ଞାନୀ ଚିକିତ୍ସା କ୍ଷେତ୍ରରେ ଏକ ନୂତନ ପଥ ଆବିଷ୍କାର କରିଛନ୍ତି ।

ଷ୍ଟକହୋମ ଅଞ୍ଚଳରୁ କମିଟି ପକ୍ଷରୁ କୁହାଯାଇଛି ଯେ, ଏମାନେ ଚିକିତ୍ସା କ୍ଷେତ୍ରରେ ଏକ ନୂତନ ପଥ ଆବିଷ୍କାର କରିଛନ୍ତି । ବିଶେଷତଃ ଅଙ୍ଗ ପ୍ରତ୍ୟଙ୍ଗକୁ ପ୍ରତିରୋପଣ କରିବାରେ ଏବଂ କ୍ୟାନସର ଚିକିତ୍ସା କ୍ଷେତ୍ରରେ ଏମାନେ ସଫଳ ହୋଇ-ପାରିଛନ୍ତି । ଏହାଦ୍ୱାରା ଆମ ଶରୀରକୁ ଜୀବାଣୁ ଏବଂ ଟକ୍ସିନ୍ ପ୍ରଭୃତିରୁ ସଫଳ ଭାବରେ ରକ୍ଷା କରାଯାଇପାରିବ ।

୧୯୭୫ ରେ ଏହାକୁ କୋଲର ଆବିଷ୍କାର କରିଥିଲେ ମଧ ସେ ସମୟରେ ଅଙ୍ଗ ପ୍ରତ୍ୟଙ୍ଗକୁ ପ୍ରତିରୋପଣ କରିବା ସମ୍ଭବପର ହୋଇପାରିନଥିଲା ।

## କଂପ୍ୟୁଟର ଦ୍ୱାରା ପ୍ରଜାପତି ଘଟସୂତ୍ର

କଂପ୍ୟୁଟର ଯେ କେବଳ ବିଜ୍ଞାନ ଓ ଗବେଷଣା କାର୍ଯ୍ୟରେ ବ୍ୟବହୃତ ହେବ ତା' ନୁହେଁ, ଆଜିକାଲି ଏହାକୁ ପ୍ରାୟ ସବୁ କାର୍ଯ୍ୟରେ ବ୍ୟବହାର କରାଯାଉଛି । ଏପରିକି ପ୍ରଜାପତି ଘଟସୂତ୍ର କାର୍ଯ୍ୟରେ ମଧ୍ୟ କଂପ୍ୟୁଟରକୁ ବ୍ୟବହାର କରାଯାଉଛି । ପଶ୍ଚିମ ଜର୍ମାନୀ ସହାୟତାରେ ଜାପାନର ଗୋଟିଏ ଘରୋଇ ସଂସ୍ଥା କଂପ୍ୟୁଟର ସାହାଯ୍ୟରେ ବରକନିଆଁ ଯୋଗାଡ଼ କରି ବାର୍ଷିକ ପ୍ରାୟ ୧୮.୫ ନିୟୁତ ଡଲାରର ବ୍ୟବସାୟ କରୁଛନ୍ତି । ଇଚ୍ଛୁକ ବରକନ୍ୟାମାନେ ଏଇ କମ୍ପାନୀକୁ ସେମାନଙ୍କ ସମ୍ପର୍କରେ ସମସ୍ତ ତଥ୍ୟ କଂପ୍ୟୁଟରକୁ ଯୋଗାଇ ଦିଆଯାଏ ଓ କଂପ୍ୟୁଟର ଉପଯୁକ୍ତ ବରକନ୍ୟା ଠିକ୍ କରିଥାଏ । ବର୍ତ୍ତମାନ ବହୁତଗୁଡ଼ିଏ କମ୍ପାନୀ ଏଇ ଲାଭପ୍ରଦ ବ୍ୟବସାୟ କରୁଛନ୍ତି । ଏଇ କଂପ୍ୟୁଟରର ନାମ ଅଲଟମ୍ୟାନ୍ ।

## ସ୍ୱରିଶହ ପୁଞ୍ଜିପତିଙ୍କ ସହ ୨୨ କୋଟି ସାଧାରଣ ଲୋକ ସମାନ

ଆମେରିକାରେ ୪୦୦ ଜଣ ପୁଞ୍ଜିପତି ଅଛନ୍ତି । ଯେଉଁମାନଙ୍କର ସଞ୍ଚିତ ଟଙ୍କାର ପରିମାଣ ଅବଶିଷ୍ଟ ପ୍ରାୟ ୨୨ କୋଟି ଆମେରିକାୟମାନଙ୍କର ଜମା ଟଙ୍କା ସହ ସମାନ ବୋଲି ଜଣାଯାଇଛି ।

ଏଇ ସ୍ୱରିଶହ ଜଣ ପୁଞ୍ଜିପତି ପ୍ରାୟ ୧୩୭୫୦୦ କୋଟି ଟଙ୍କା ଜମା ରଖିଥିବା ବେଳେ ଅବଶିଷ୍ଟ ଆମେରିକା ବାସୀଙ୍କର ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କରେ ସଞ୍ଚୟ ଏକାଉଣ୍ଟରେ ଜମାଥିବା ଟଙ୍କାର ମୋଟ ପରିମାଣ ହେଉଛି ୧୩୮୭୦୦୦ କୋଟି ଟଙ୍କା । ଏଇ ସ୍ୱରିଶହ ପୁଞ୍ଜିପତିଙ୍କ ମଧ୍ୟରୁ ସବୁଠାରୁ ଧନଶାଳୀ ବ୍ୟକ୍ତି ଶ୍ରୀ ୱର୍ଡ଼ନ ବେଟୀଙ୍କର ସଞ୍ଚିତ ଟଙ୍କାର ପରିମାଣ ୪୫୦୦ କୋଟି ଟଙ୍କା ।

## ଲଣ୍ଠନ ମାଛ

ଏଇ ପ୍ରକାର ମାଛ ସାଧାରଣତଃ ସମୁଦ୍ରର ଗଭୀର ଅଂଶରେ ରୁହନ୍ତି । ସମୁଦ୍ରର ଗଭୀର ଅଂଶ ଅତ୍ୟଧିକ ଥଣ୍ଡା ଓ ଅନ୍ଧାର । ସୂର୍ଯ୍ୟକିରଣ ସମୁଦ୍ର ତଳ ପର୍ଯ୍ୟନ୍ତ ଯାଇପାରେ ନାହିଁ । ଏହି ମାଛର ଦେହରେ ଥିବା କେତେକ ଉଜ୍ଜଳ ଦାଗରୁ ଆଲୋକ ବାହାରିଥାଏ । ଏହି ଦାଗ ଗୁଡ଼ିକରେ ଫସଫରସ ଅଂଶ ଥିବାରୁ ଏପରି ହୋଇଥାଏ । ଏହି ଦପଦପ ହେଉଥିବା ଆଲୋକ ଦ୍ୱାରା ସେ ନିଜର ଭକ୍ଷଣକାରୀଠାରୁ ନିରାପଦରେ ରହିପାରେ । କେତେକ ମାଛଙ୍କର ପେଟତଳେ ଏହିପରି ଦାଗ ଥାଏ । ଅନ୍ୟ କେତେକଙ୍କର ପେଟରେ ଟିକେ ଉପରକୁ ଲାଞ୍ଜଠାରୁ ମୁଣ୍ଡ ପର୍ଯ୍ୟନ୍ତ ଏହା ଥାଏ । ରେଳଗାଡ଼ିର ଆଗରେ ବଲବ୍ ପରି ଏଇ ମାଛର ମୁଣ୍ଡ ପାଖରେ ଏକ ବଡ଼ ଉଜ୍ଜଳ ଦାଗ ଥାଏ ।

ଲଣ୍ଠନ ମାଛର ଆଖି ଅନ୍ୟ ସବୁ ମାଛମାନଙ୍କ ଆଖିଠାରୁ ବଡ଼ । ଏହାର ମୁଣ୍ଡ ପାଖରେ ଏକ ଛୋଟ ଡେଣା ଥିବାରୁ ଜଣାଯାଏ ଯେ, ଏମାନେ "ସାଲମୋନ" ମାଛର ବଂଶଧର । ଏହି ମାଛର ଲମ୍ବ ପାଞ୍ଚରୁ ଦଶ ସେ.ମି. ପର୍ଯ୍ୟନ୍ତ ହୋଇଥାଏ । ଓଠାରିଆ ପାଟିରେ ଥିବା ଦାନ୍ତଗୁଡ଼ିକ ଛୁରିପରି ଧାର, ସେ ସମୁଦ୍ର ମଧ୍ୟରେ ଥିବା ଛୋଟ ଛୋଟ ଜଳଜୀବମାନଙ୍କୁ ଖାଏ ।

କେତେକ ଲଣ୍ଠନ ମାଛ ରାତିରେ ସୂର୍ଯ୍ୟକିରଣ ନଥିବା ଯୋଗୁ ପାଣି ଉପରକୁ ଆସନ୍ତି । ସୂର୍ଯ୍ୟ ଉଇଁବା ପୂର୍ବରୁ ଏମାନେ ପୁଣି ଗଭୀର ଜଳକୁ ଫେରିଯାଆନ୍ତି ।

## ମାସିକ ବେତନ କେତୋଟି ପଇସା

ଏହାକୁ ହୁଏତ ଆପଣମାନେ ବିଶ୍ୱାସ କରିନପାରନ୍ତି, ତଥାପି ଏହା ଏକ ନିପଟ ସତ୍ୟ । ଆଜିର ଏଇ ଜେଟ ଯୁଗରେ ଏଭଳି କେତେକ ଲୋକ ଅଛନ୍ତି, ଯେଉଁମାନଙ୍କର ମାସିକ ବେତନ ହେଉଛି ସାମାନ୍ୟ କେତୋଟି ପଇସା । ମଧ୍ୟପ୍ରଦେଶର ଷୋଡ଼ଶ ଶତାବ୍ଦୀରେ ନିର୍ମିତ ବିଖ୍ୟାତ ଜାହ୍ନବୀପୀର ମନ୍ଦିରର ପୂଜାରୀର ଦରମା ମାସିକ କେତୋଟି ପଇସା ।

ଏଇ ପ୍ରଥା ଆଗରୁ ଚଳିଆସିଛି ଯେ, ପୂଜାରୀ ମାସିକ ବେତନ ପାଇବ ମାତ୍ର ଦୁଇ ଅଣା । ଏବେ ଏଇ ମନ୍ଦିରର ରକ୍ଷଣାବେକ୍ଷଣ ଦାୟିତ୍ୱ ମଧ୍ୟପ୍ରଦେଶ ସରକାର ହାତକୁ ନେଇଥିଲେ ମଧ୍ୟ ଏହାର ପୂଜାରୀମାନଙ୍କ ଦରମାରେ କୌଣସି ପରିବର୍ତ୍ତନ ହୋଇନାହିଁ । ସେମାନେ ପୂର୍ବଭଳି ମାସକୁ ଦୁଇ ଅଣା ଦରମା ପାଉଛନ୍ତି ।

## ସ୍ୱତନ୍ତ୍ରତା ଦିବସ

ସ୍ୱତନ୍ତ୍ର ରାଷ୍ଟ୍ରରେ ସ୍ୱତନ୍ତ୍ରତା ଦିବସ ପାଳନ କରାଯାଏ । ଚଳିତ ବର୍ଷ ଆମେରିକାର ରାଷ୍ଟ୍ରୀୟ ଦିବସ ଜୁଲାଇ ୪ ବୁଧବାରରେ ମହିଳା ଚିତ୍ରକାର ଲିଣ୍ଡା ମୋଣ୍ଟେନୋ ଏବଂ ତାଙ୍କର ସଙ୍ଗୀ ଟେଞ୍ଚିଂଗ ସି ୨.୪ ମିଟର ଲମ୍ବର ଏକ ଦଉଡ଼ି ବାହାର କରଇଥିଲେ ନିଜ ଅଣ୍ଟାରୁ ।

୧୯୮୩ ଜୁଲାଇ ୪ରେ ଉଭୟେ ଏହି ନାଇଲନ ଦଉଡ଼ି ନିଜ ନିଜ ଅଣ୍ଟାରେ ବାନ୍ଧିଥିଲେ । ଉଭୟେ ୩୬୫ ଦିନଯାକ ଏକତ୍ର ଖିଆପିଆ କରୁଥିଲେ, ସାଇକେଲ ଚଳାଉଥିଲେ, ଜିନିଷପତ୍ର କିଣୁଥିଲେ, ନିଦ୍ରା ଯାଉଥିଲେ ମଧ୍ୟ । ମାତ୍ର କେହି କାହାରିକୁ ସ୍ପର୍ଶ କରୁନଥିଲେ ।

## ବିଶ୍ୱରେ ବିଚିତ୍ର ଚୋରି

କେତେକ ରାଷ୍ଟ୍ରରେ ନିୟମ ରହିଛି ଯେ, ଚୋରି ଦ୍ରବ୍ୟ ଅଦାଲତରେ ପେଶ କରିବାକୁ ପଡ଼େ । ଚୋରି ମକଦ୍ଦମାରେ ଫ୍ରାନ୍ସର ଏକ ମାଜିଷ୍ଟ୍ରେଟଙ୍କ ଅଦାଲତ ଦୀର୍ଘଦିନ ଧରି ବନ୍ଦ ରହିବାରୁ, ଚୋରି ଦ୍ରବ୍ୟ ଅଦାଲତକୁ ଆସିପାରିଲା ନାହିଁ । ଚୋରମାନେ ତିନି କୋଠରୀ ବିଶିଷ୍ଟ ଏକ ଗୃହକୁ ଚୋରି କରିଥିଲେ । ଚୋରି ଦ୍ରବ୍ୟ ମଧ୍ୟରେ ତିନୋଟି ଲୁହା ଛଡ଼ା ଓ ଛଅ ଫୁଟର ଦୁଆରବନ୍ଧ ରହିଥିଲା । ଏହି ଚୋରି ରାତିରେ ହୋଇଥିଲା ।

ଆୟାରଲାଣ୍ଡରେ ସାଢ଼େ ଚାର ମାଇଲ ଲମ୍ବର ରେଳ ଧାରଣା ଚୋରମାନେ ନେଇଗଲେ । ଅନେକ ଦିନ ପର୍ଯ୍ୟନ୍ତ ରେଳ ଚଳାଚଳ ବ୍ୟାହତ ହୋଇଥିଲା । ଏବେ ରେଳ ଚଳାଚଳ ପାଇଁ ସ୍ଥିର ହେବାପରେ ସିଗନାଲ ଓ ଫାଟକ ଆଦି ସମସ୍ତ ଚୋରି ଯାଇଅଛି ।

ହୁଙ୍କ ପୂର୍ବରୁ ମାଣ୍ଡ୍ରିୟଲରେ ଜଣେ ଗୃହ ମାଲିକ ସନ୍ଧାନ ନଦେବା ପାଇଁ ଅଠଟାଯାକ କୋଠରୀରେ ସ୍ଥିରିଦେଲେ । ଦିନେ ଦେଖିଲେ ଯେ, ଇଟାଠାରୁ ଆରମ୍ଭ କରି ବିଜୁଳୀ ଫିଟିଙ୍ଗ ଓ କଂକ୍ରୀଟ ସମସ୍ତ ଚୋରମାନେ ନେଇଯାଇଛନ୍ତି ।

ଏକ ଇଂରେଜ ପରିବାର ବଗିଚା କରାଇଥିଲେ । ବଗିଚା କରାଯିବା ପାଇଁ ବର୍ଷ ବର୍ଷ ଲାଗିଥିଲା । ଗ୍ରୀଷ୍ମାବକାଶ କଟାଇ ଫେରିଆସି ସେମାନେ ଦେଖିଲେ ଯେ, ବଗିଚା ଚୋରି ଯାଇଛି । ପଡ଼ୋଶୀମାନେ କହିଲେ, କେତେକ ଲୋକ ଲରିରେ ଆସି ବଗିଚା ଖୋଳି ନେଇଗଲେ । ସେମାନେ ଭାବିଥିଲେ ଯେ, ବଗିଚା ବିକ୍ରୀ କରିଦେଉଛନ୍ତି ; ତେଣୁ ପଡ଼ୋଶୀମାନେ ହସ୍ତକ୍ଷେପ କରିନଥିଲେ ।

ଇଟାଲୀର କୌଣସି ଏକ ପାର୍କରେ ମୂର୍ତ୍ତିଟାଏ ରହିଥିଲା । ଏହି ବିରାଟ ମୂର୍ତ୍ତି ରାତାରାତି ହରଣଚାଳ ହୋଇଗଲା । କିଛିଦିନ ପରେ ଅଳିଆଗଦାରୁ ଏହା ମିଳିଥିଲା । ଚୋରି ସକାଶେ ତିନିଜଣଙ୍କୁ ଗିରଫ କରାଗଲା । ସେମାନଙ୍କ ମଧ୍ୟରୁ ଜଣେ ଚୋର କହିଲା, ଏହି ମୂର୍ତ୍ତି ପ୍ରତି ମୋର ଶ୍ରଦ୍ଧା ନଥିଲା ! ଏହା ଏତେ କଳା ବିରୋଧୀ ଥିଲା ଯେ, ମୋର ସୌନ୍ଦର୍ଯ୍ୟବୋଧ ପ୍ରତି ଯଥେଷ୍ଟ ଆଘାତ ଦେଉଥିଲା ।

ଫ୍ରାନ୍ସର ଗ୍ଲେଲିଶ ବର୍ଷ ୟା ଜଣେ ଅବିବାହିତା ମହିଳା ବିବାହ ମୁଦ୍ରିକା ଚୋରି କରିବାପାଇଁ ଅଭିଳାଷ ରଖିଥିଲେ । ସେ ବିବାହ ମୁଦ୍ରିକା ଚୋରାଇ ନେଇ ସୁଖ ସ୍ୱପ୍ନ ଦେଖିବାରେ ଲାଗିଥିଲେ ।

ମୋଟର ଡ୍ରାଇଭର ବର୍ଷଯାକ ଆଠ ପୁତ୍ର ଦରକାର କରୁଥିଲା । ପୋଲିସ ଯେତେବେଳେ କୌଣସି ବ୍ୟକ୍ତିର ଘରେ ଖାନତଲାସ କଲା, ମୋଟରର ଅଠଲକ୍ଷ ପୁତ୍ର ମିଳିଲା । ଚୋର କହିଥିଲା : ମତେ ତାହାର ଗୋଲରଟା ଖୁବ୍ ଭଲ ଲାଗେ ।

କିଛିଦିନ ପୂର୍ବରୁ ଆମେରିକାର ଫ୍ଲୋରିଡାରେ ଚୋର ଟେଲିଫୋନ୍ ଚୋରାଇ ନେଲା । ସେ ଲଣ୍ଡନର ରାଜଧାନୀ ପାର୍ଶ୍ୱରେ ଚମତ୍କାର ଚୋରିଟାଏ ହୋଇଥାଏ । ସିପାହୀଙ୍କର ଜୋତା ଚୋରି ହୋଇଯାଉଥିଲା ।

## ବିଶ୍ୱରେ ୧୩୫୦୦ ମେଗାଟନ ପରମାଣୁ ଅସ୍ତ୍ର

ବିଶ୍ୱରେ ୧୩୫୦୦ ମେଗାଟନ ପରମାଣୁ ବୋମାଗୁଡ଼ିକ ମଧ୍ୟରୁ ୧୦୦୦ ମେଗାଟନ ପରମାଣୁ ବୋମା ବ୍ୟବହାର କରାହେଲଣି । ଏହାରି ଉପରେ ଜୀବଜଗତର ଅସ୍ତିତ୍ୱ ନିର୍ଭର କରୁଅଛି ।

## ଅନିଦ୍ରାରେ ବିଶ୍ୱ ରେକର୍ଡ

ଭିକ୍ଟର ଜୁଡ଼ୋ (Victor Judo) କାନାଡ଼ାରେ ଓଣ୍ଟାରିଓର ପୋର୍ଟ ଏରିଠାରେ ୧୮ ଦିନ ୨୦ ଘଣ୍ଟା କାଳ ୧୯୮୩ରେ ଅନିଦ୍ରିତ ଅବସ୍ଥାରେ କଟାଇଛନ୍ତି । ପୂର୍ବରୁ ବ୍ରିଟେନର ମରିନ ୱେଷ୍ଟନ (Maureen Weston) ୧୯୭୭ ମସିହାରେ ୧୮ ଦିନ ୨୨ ଘଣ୍ଟା ଅନିଦ୍ରାରେ ରହିଥିଲା ।

## ଭାରତରେ ୭୯୦ ଜଣରେ ଜଣେ ପୋଲିସ

ଭାରତରେ ୭୯୦ ଜନସାଧାରଣଙ୍କ ମଧ୍ୟରେ ଜଣେ ପୋଲିସ ରହିଛନ୍ତି । ଆମେରିକା ଯୁକ୍ତରାଷ୍ଟ୍ରରେ ୫୧୪ ଜନସାଧାରଣଙ୍କ ମଧ୍ୟରେ ଜଣେ ପୋଲିସ ରହୁଛନ୍ତି । ବ୍ରିଟେନରେ ୩୭୨ ଜନସାଧାରଣଙ୍କ ମଧ୍ୟରେ ଜଣେ ଏବଂ ଫ୍ରାନ୍ସରେ ୨୯୮ ଜନସାଧାରଣଙ୍କ ମଧ୍ୟରେ ଜଣେ ପୋଲିସ ରହିଛନ୍ତି ।

## ବିଶ୍ୱରେ ୫୦୦୦୦୦ ପ୍ରକାରର ବୃକ୍ଷ

ବିଶ୍ୱରେ ୫୦୦,୦୦୦ ପ୍ରକାରର ବୃକ୍ଷ ରହିଛି । ଭାରତବର୍ଷରେ ୧୫,୦୦୦ ପ୍ରକାରର ବୃକ୍ଷ ରହିଥିବାର ଜଣାପଡ଼ିଛି ।

## ବିଶ୍ୱର ସର୍ବବୃହତ କୋଠା

ଆମେରିକା ଯୁକ୍ତରାଷ୍ଟ୍ରର ଫ୍ଲୋରିଡ଼ା କେପ୍‌କାନଭେରାଲସ୍ଥିତ ପାର୍ଲାମେଣ୍ଟ ଭବନ ବିଶ୍ୱରେ ସର୍ବବୃହତ୍ କୋଠା । ଏହି ଭବନ ଦଶ ଏକର ଭୂମିରେ ନିର୍ମିତ ହୋଇଅଛି । ଏହାର ସ୍ୱଷ୍ଟେଟି ଘରକାର ଉଚ୍ଚ ହେଉଛି ୪୬୦ ଫୁଟ ।

## ବିନା ଅମ୍ଳଜାନରେ ଏଭରେଷ୍ଟ ଆରୋହଣରେ ପ୍ରଥମ ଭାରତୀୟ

ଗାଙ୍ଗଟକ୍‌ର ପର୍ବତାରୋହଣ ଇନ୍‌ଷ୍ଟ୍ରକ୍ଟର ୩୪ ବର୍ଷ ବୟସ୍କ ଫୁ ଦର୍ଜେ ମଇ ୯ ତାରିଖରେ ବିନା ଅମ୍ଳଜାନରେ ଏଭରେଷ୍ଟର ୮୮୪୮ ମିଟର ଉଚ୍ଚକୁ ଆରୋହଣ କରିବାରେ ପ୍ରଥମ ଭାରତୀୟ । ସେ ଭାରତୀୟ ଆରୋହଣକାରୀଙ୍କ ମଧ୍ୟରେ ୧୦ମ । ଇଟାଲୀର ରେନହୋଲଡ଼ ମେସନେର (Reinhold Mesner) ବିନା ଅମ୍ଳଜାନରେ ସର୍ବପ୍ରଥମ ଏଭରେଷ୍ଟ ଶୃଙ୍ଗ ଆରୋହଣ କରିଥିଲେ ।

## ବିଶ୍ୱର ସର୍ବପ୍ରଥମ ହୃତପିଣ୍ଡ ଓ ଯକୃତ ରୋପଣ

ଆମେରିକା ଯୁକ୍ତରାଷ୍ଟ୍ରର ଟେକ୍‌ସାସରେ ଛଅ ବର୍ଷର ବାଳିକା ଷ୍ଟର୍ମି ଜନସ୍ (Stormy Jones)ର ଶରୀରରେ ପୃଥିବୀରେ ପ୍ରଥମଥର ସକାଶେ କୃତ୍ରିମ ହୃତପିଣ୍ଡ ଓ ଯକୃତ୍ ରୋପଣ କରାଯାଇଅଛି । ବାଳିକାଟି କିଛିକାଳଧରି ପୀଡ଼ିତା ରହିଥିଲା ।

## ଇସ୍ପାତ-ତାର ଉପରେ ଫରାସୀଙ୍କର କୌଶଳ ପ୍ରଦର୍ଶନ

୧୯୭୪ ମସିହା ଅକ୍ଟୋବର ଏକ ସକାଳେ ୨୪ ବର୍ଷ ବୟସ୍କ ଫରାସୀ ଦୈହିକ କୌଶଳ ପ୍ରଦର୍ଶନକାରୀ ଫିଲିପ ପେଟିଟ୍ (Phillippe Petit) ଆମେରିକା ଯୁକ୍ତରାଷ୍ଟ୍ରରେ ବିଶ୍ୱ ଶିଳ୍ପ କେନ୍ଦ୍ର (World Trade Center)ର ବୁରୁଜରେ ଥିବା ଏକ ଇଞ୍ଚ ଇସ୍ପାତ-ତାର ଉପରେ ସ୍ୱଳି ରେକର୍ଡ ସୃଷ୍ଟି କରିଛନ୍ତି । ୧୩୫୦ ଫୁଟ ଉଚ୍ଚରେ ୪୫ ମିନିଟ୍ ଧରି ସେ ଏହି କୌଶଳ ଦେଖାଇଥିଲେ ।

## ପରମାଣୁ ବୋମା ୫୦ ମିନିଟ୍‌ରେ ୫୦ ନିୟୁତ ଲୋକଙ୍କର ଜୀବନ ହରାଇବ

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ୫୦ ନିୟୁତ ମଣିଷ ମୃତ ହୋଇଥିବାର ଜଣାଯାଇଛି ; ମାତ୍ର ପରମାଣୁ ବୋମାରେ ୫୦ ମିନିଟ୍ ମଧ୍ୟରେ ୫୦ ନିୟୁତ ମଣିଷ ଜୀବନ ହରାଇବେ ।

## ଆମ୍ବ ବୃକ୍ଷରେ ଭାରତ ପ୍ରଥମ

ଭାରତରେ ପୃଥିବୀର ସବୁଠାରୁ ଅଧିକ ଆମ୍ବ ଫଳେ । ୮.୬୬ ନିୟୁତ ଟନ୍ ଆମ୍ବ ପ୍ରତିବର୍ଷ ହୋଇଥାଏ । ଏହା ପୃଥିବୀର ୬୫% ଆମ୍ବ । ଉତ୍ତରପ୍ରଦେଶରେ ୨୨% ଆମ୍ବ ମିଳିଥାଏ ।

## ପ୍ରଥମ ଜ୍ଞାନପୀଠ ପୁରସ୍କାର

ମାଲୟାଲମ ଲେଖକ 'Ottakkuzhal' ପାଇଁ ୧୯୬୫ ମସିହାରେ ସର୍ବପ୍ରଥମ ଜ୍ଞାନପୀଠ ପୁରସ୍କାର ପାଇଛନ୍ତି ।

## ବିଶ୍ୱର ସର୍ବୋଚ୍ଚ ସାମୁଦ୍ରିକ ପର୍ବତ

ପ୍ରଥମ ଭାରତୀୟ ଅଭିଯାତ୍ରୀ ଦଳ ଆଣ୍ଟାର୍କଟିକା ନିକଟସ୍ଥ ଭାରତ ମହାସାଗରରେ ବିଶ୍ୱର ସର୍ବୋଚ୍ଚ ସାମୁଦ୍ରିକ ପର୍ବତର ସନ୍ଧାନ ପାଇଛନ୍ତି । ଏହାର ପ୍ରସ୍ଥ ୧୮୫ କିଲୋମିଟର ଏବଂ ଉଚ୍ଚତା ୧୩୪ କିଲୋମିଟର ।

## ପୃଥିବୀର ବୃହତ୍ ରେଳରାସ୍ତା

ପୃଥିବୀର ବୃହତ୍ ରେଳରାସ୍ତା 'ଟ୍ରାନ୍ସ ସାଇବେରିଅନ ଲାଇନ' (Trans-Siberian line) ମସ୍କୋରୁ ନଖୋଦ୍କା (Nakhodka) ପର୍ଯ୍ୟନ୍ତ ଯାଇଅଛି । ଏହି ରେଳରାସ୍ତା ହେଉଛି ୯୪୩୮ କିଲୋମିଟର । ଯାତ୍ରା ସମୟରେ ୯୭ଟି ସ୍ଥାନରେ ରେଳ ରହେ ଏବଂ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ୮ ଦିନ ୪ ଘଣ୍ଟା ୨୫ ମିନିଟ୍ ସମୟ ଲାଗେ ।

## ବ୍ଲାକ୍‌ବୋର୍ଡରୁ ସଙ୍ଗୀତ ଶିକ୍ଷା

ଏକ ଇଂରେଜ କମ୍ପାନୀ ଗୀତ ଗାଉଥିବା ବ୍ଲାକବୋର୍ଡ ପ୍ରସ୍ତୁତ କରୁଛନ୍ତି । ଏହା ପିଲାମାନଙ୍କୁ ବାଦ୍ୟ ଶିକ୍ଷା ଦେଉଅଛି । ଶିକ୍ଷାଦାନକାରୀ (Instructor) ଇଲେକ୍‌ଟ୍ରୋନିକ ଚକ୍ ବୋର୍ଡରେ ଲେଖିଥାନ୍ତି ଏବଂ ସେଗୁଡ଼ିକ ଉପରେ ଏକ ନିର୍ଦ୍ଦେଶକ (Pointer) ବୁଲାଇ ନିଅନ୍ତି । ଏହାପରେ ସେଥିରୁ ସଙ୍ଗୀତର ମୂର୍ଚ୍ଛନା ବାହାରିଥାଏ ।

## ୧୦୦୦ ମିଟର ଉଚ୍ଚର ଲବଣ ପର୍ବତ

ସୋଭିଏତ୍‌ର ତାଜିକସ୍ଥାନରେ ୧୦୦୦ ମିଟର ଉଚ୍ଚର ଏକ ଲବଣ ପର୍ବତର ସନ୍ଧାନ ମିଳିଛି । ଏହା ମାନବ ସମାଜର ଶହେବର୍ଷର ଆବଶ୍ୟକତା ମେଣ୍ଟାଇ-ପାରିବ ।

## ପୃଥିବୀ ବହୁଳ ଜନବସତି ରାଷ୍ଟ୍ର

ନେଦରଲାଣ୍ଡ ହେଉଛି ବହୁଳ ଜନବସତି ରାଷ୍ଟ୍ର । ଏହାର ଲୋକସଂଖ୍ୟା ୧୪ଲକ୍ଷ ନିୟୁତ । ବ୍ରିଟେନର ଏକ-ସପ୍ତମାଂଶ ଅଞ୍ଚଳରେ ସେମାନେ ବସବାସ କରୁଛନ୍ତି । ଆମେରିକା ଯୁକ୍ତରାଷ୍ଟ୍ରର ଦକ୍ଷିଣ କାରୋଲିନା (South Carolina)ର ଏହା ହେଉଛି ଏକ-ତୃତୀୟାଂଶ ଅଞ୍ଚଳ ।

## ବିଶ୍ୱରେ ତିନୋଟି ନୈଋଣ୍ୟ

ପୃଥିବୀରେ ତିନୋଟି ନୈଋଣ୍ୟ ରହିଛି । ଅଷ୍ଟ୍ରେଲିଆର ଗୋଟିଏ ସ୍ଥାନ ନୈଋଣ୍ୟଜନକ । ପ୍ରଶାନ୍ତ ମହାସାଗରର ଗୋଟିଏ ଦ୍ୱୀପ ହେଉଛି ନୈଋଣ୍ୟଜନକ । ଆମେରିକାର ପଶ୍ଚିମ ଉପକୂଳରେ 'କେ କେ କଟ୍ କଟ୍' ଶବ୍ଦ ଅନ୍ୟ ଏକ ନୈଋଣ୍ୟ ।

## କଂକି ୬ ମିଟର ଦୂରରୁ ମଶା ଦେଖେ

ଅନ୍ୟ ପତଙ୍ଗଠାରୁ କଙ୍କି ଘଣ୍ଟାରେ ୮୦ କିଲୋମିଟର ଉଡ଼ିପାରିବ । କଂକିର ଆଖିଗୁଡ଼ିକ ଏତେ ବଡ଼ ଏବଂ ଏତେ ସମର୍ଥ ଯେ, ୬ ମିଟର ଦୂରରୁ ମଶା ଦେଖିପାରେ ।

## ବ୍ୟାଙ୍କକରେ ଚିତ୍ତାକର୍ଷକ ବୌଦ୍ଧ ମନ୍ଦିର

ଥାଇଲାଣ୍ଡର ରାଜଧାନୀ ବ୍ୟାଙ୍କକରେ ୪୦୦ଟି ଚିତ୍ତାକର୍ଷକ ବୌଦ୍ଧ ମନ୍ଦିର ରହିଛି । ସେଗୁଡ଼ିକ ମଧ୍ୟରୁ Emerald Budha Temple ହେଉଛି ଶ୍ରେଷ୍ଠ । ଏହି ମନ୍ଦିରକୁ ଯିବାପାଇଁ ୬୩ଟି ଚିତ୍ତାକର୍ଷକ ଫାଟକ ପାର ହେବାକୁ ହୁଏ ।

## କପା ଉତ୍ପାଦନରେ ବିଶ୍ୱରେ ରେକର୍ଡ

ଇନ୍ଦୋରଠାରୁ ୮୦ କିଲୋମିଟର ଦୂର ଧାମନୋଦର ଶଙ୍କରଲାଲ ପାଟିଦାର ଏକର ପ୍ରତି **୩୫** କୁଇଣ୍ଟାଲ କପା ଉତ୍ପାଦନ କରିଛନ୍ତି । ପୂର୍ବରୁ ଏକର ପ୍ରତି ୩୨ କୁଇଣ୍ଟାଲ କପା ଉତ୍ପାଦନ କରଯାଉଥିଲା ।

## ମଗର ମାଛ ପାଣି ଭିତରେ ୮ କିଲୋଗ୍ରାମ

ଗୋଟିଏ ମଗର ମାଛ ଓଜନ କଲେ ୮୦୦ କିଲୋଗ୍ରାମରୁ ବେଶୀ ହେବ ; ମାତ୍ର ପାଣିରେ ୮ କିଲୋଗ୍ରାମ ମଧ୍ୟରେ ତାହାର ଓଜନ ହୋଇଥାଏ । ମଗର ମାଛ ପାଣି ମଧ୍ୟରେ ଅଧିକ କାଳଧରି ବଞ୍ଚିରହେ ।

## ପ୍ରାଚ୍ୟ ଦ୍ୱୀପପୁଞ୍ଜରେ ପ୍ରସ୍ତର ମୂର୍ତ୍ତି

ଦକ୍ଷିଣ ଆମେରିକା ଉପକୂଳରୁ ୨୫୦୦ ମାଇଲ ଦୂର ପ୍ରାଚ୍ୟ ଦ୍ୱୀପପୁଞ୍ଜରେ ବିସ୍ମୟଜନକ ପ୍ରସ୍ତର ମୂର୍ତ୍ତିମାନ ରହିଅଛି । ଏହି ପ୍ରସ୍ତର ମୂର୍ତ୍ତିଗୁଡ଼ିକ ୧୦ ଫୁଟରୁ ୪୦ ଫୁଟ ପର୍ଯ୍ୟନ୍ତ ଉଚ୍ଚ । ଅନେକ ପ୍ରସ୍ତର ମୂର୍ତ୍ତିର ଓଜନ ୫୦ ଟନ୍ ହେବ ।

## ପାଳଙ୍ଗ ଶାଗରୁ ସାମର୍ଥ୍ୟ

ଟୋକିଓର ଡକ୍ଟର କାକୁଜି ୟୋସିଦା **(Dr. Kakuji Yoshida)** ଛଅବର୍ଷ ମଧ୍ୟରେ ୮୨୮୦ ପାଉଣ୍ଡ ପାଳଙ୍ଗ ଶାଗ ଖାଇଛନ୍ତି । ସେ ଦିନକୁ ତିନି ପାଉଣ୍ଡ ପାଳଙ୍ଗ ଶାଗ ଖାଉଥିବାରୁ ଶାରୀରିକ ସାମର୍ଥ୍ୟ ରକ୍ଷା କରିପାରିଛନ୍ତି ।

## ସୌରଶକ୍ତିରେ ଟି. ଭି., ଟେଲିଫୋନ ଓ ଟେଲେକ୍ସ

ଅଷ୍ଟ୍ରେଲିଆରେ ଟେଲିଭିଜନ, ଟେଲିଫୋନ ଏବଂ ଟେଲେକ୍ସ ସବୁ ସୌରଶକ୍ତିରେ କାର୍ଯ୍ୟକାରୀ ହେଉଛି । ୧୩ଟି ଷ୍ଟେସନ ଯୋଗେ ବିଦ୍ୟୁତ୍ ଯୋଗାଣ କରଯାଉଅଛି ସୌରଶକ୍ତି ସାହାଯ୍ୟରେ ।

## ଆମେରିକାରେ ଟି.ଭି.ର ବହୁଳ ପ୍ରସାର

ବିଶ୍ୱରେ ଆମେରିକା, ସୋଭିଏତ ଋଷ, କାନାଡ଼ା, ଜାପାନ, ଅଷ୍ଟ୍ରେଲିଆ ଏବଂ ବ୍ରିଟେନରେ ଟେଲିଭିଜନର ପ୍ରସାର ଯଥେଷ୍ଟ ବୃଦ୍ଧିପାଇଛି । ଆମେରିକାରେ ୨.୨ ଜଣରେ ଗୋଟିଏ ଟେଲିଭିଜନ ଏବଂ ଋଷିଆରେ ୬.୧ ଜଣରେ ଗୋଟିଏ ଟେଲିଭିଜନ ବ୍ୟବହାର କରଯାଉଛି । ଆମେରିକାରେ ଏବେ ୯୩ ନିୟୁତ ଟେଲିଭିଜନ ବ୍ୟବହୃତ ହେଉଛି ।

## ବିଶ୍ୱର ସର୍ବୋଚ୍ଚ ମୂଲ୍ୟର ସୁବର୍ଣ୍ଣ ଖଡ଼ଗ

୧୭୭୯ରେ ମହାଦେଶୀୟ-କଂଗ୍ରେସ **General Marie Jean Joseph Lafayette**ଙ୍କୁ ଏକ ସୁବର୍ଣ୍ଣ ଖଡ଼ଗ ଉପଢୌକନ ଦେଇଥିଲେ । ନିଉୟର୍କରେ **Sotheby Parke Bernet**ରେ ଏହାକୁ ୧୯୭୭ ନଭେମ୍ବର ୨୦ରେ ବିକ୍ରୟ କରଯାଇଥିଲା । ଏହାର ମୂଲ୍ୟ ହୋଇଥିଲା **$** ୧୪୫,୦୦୦ । ଏହା ବିଶ୍ୱରେ ସର୍ବୋଚ୍ଚ ମୂଲ୍ୟର ଅସ୍ତ୍ର ।

## ଯୋଗୀ ବିନା ଅମ୍ଳଜାନରେ ନଅ ଘଣ୍ଟା ରହିଲେ

ଉତ୍ତରପ୍ରଦେଶ କାଶୀବାସୀର ଯୋଗୀ ହାଥାନୋଗ **(Yogi Hathanoga)** ନଅଘଣ୍ଟା ବ୍ୟାପି ନିଜର ମୁଣ୍ଡ ମାଟିରେ ପୋତି ରହିପାରିଥିଲେ । ଜର୍ମାନ୍ ଭ୍ରମଣକାରୀ **Paul Deussen** ବିସ୍ମୟ ପ୍ରକାଶ କରିଥିଲେ ।

### ରୁଷ୍‌ରେ ନୂତନ ଥର୍ମୋମିଟର

ରୁଷର ଲେନିନଗ୍ରାଡ୍‌ରେ ବୈଜ୍ଞାନିକମାନେ ଏକ ନୂତନ ଥର୍ମୋମିଟର ବାହାର କରିଛନ୍ତି । ଏହା ୫00 ଡିଗ୍ରୀ ସେଣ୍ଟିଗ୍ରେଡ଼ରୁ ୩000 ଡିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପ ନିର୍ଣ୍ଣୟ କରିପାରିବ । ଉତ୍ତପ୍ତ ଧାତୁ ଓ ବିଦ୍ୟୁତ୍ ସରଞ୍ଜାମ ପକାଶେ ଏହା ବ୍ୟବହାର କରାଯାଇପାରେ ।

### ବିଚାରାଧୀନ ବନ୍ଦୀର ୩୭ ବର୍ଷ ଜେଲଜୀବନ

ଦେଶାଇ ଉରଫ ବୋକା ଠାକୁର ୩୭ ବର୍ଷଧରି ବିହାରର ମଧୁବନି ଜିଲ୍ଲା ଜେଲରେ ବିଚାରାଧୀନ ବନ୍ଦୀ ଭାବରେ ରହି ମୁକ୍ତିଲାଭ କରିଛନ୍ତି । ୧୯୪୫ ମସିହାରେ ହତ୍ୟା ଅଭିଯୋଗରେ ତାଙ୍କୁ ଗିରଫ କରାଯାଇଥିଲା ।

### ଟୋକିଓରେ ଗୁଡ଼ି ସଂଗ୍ରହାଳୟ

ଟୋକିଓର **Nihonbashi** ରେ ଗୁଡ଼ିର ସଂଗ୍ରହାଳୟ ରହିଛି । ଏଥିରେ ୨୫00 ପ୍ରକାରର ଗୁଡ଼ି ରହିଛି । ଏହା **Shingo Modegi** ପ୍ରତିଷ୍ଠା କରିଛନ୍ତି ।

### ବି. ଏ. ପରୀକ୍ଷାରେ ଗୋଡ ସାହାଯ୍ୟରେ ଉତ୍ତର

ମଧ୍ୟପ୍ରଦେଶର ରବିଶଙ୍କର ବିଶ୍ୱବିଦ୍ୟାଳୟରେ ୧୯ ବର୍ଷ ବୟସ୍କ ସମି ଘୋଷ ବି. ଏ. ପରୀକ୍ଷା ଦେଇଛନ୍ତି । ସେ ତାଙ୍କର ଦୁଇ ହାତ ହରାଇ ଥିବାରୁ ଗୋଡ଼ରେ ସବୁ ଲେଖିଛନ୍ତି ।

### ବାର ବର୍ଷର ଦୁଃସ୍ଥ ବାଳକ ବରୋଦାର ମହାରାଜା

୧୮୭୫ ମସିହାରେ ବାର ବର୍ଷର ଦୁଃସ୍ଥ ବାଳକ ବରୋଦାର ମହାରାଜାପାଇଁ ମନୋନୀତ ହୋଇଥିଲେ । ସେ ସାୟାଜିରାଓ-୩ (**Sayajirao—III**) ନାମରେ ସୁପରିଚିତ ଥିଲେ ଏବଂ ୬୪ ବର୍ଷକାଳ ବରୋଦାକୁ ଶାସନ କରିଥିଲେ ।

### ଭାରତରେ ତିନିପ୍ରକାର ରେଳଲାଇନ

ଭାରତୀୟ ରେଳପଥର ତିନିପ୍ରକାର ବ୍ୟବଧାନ ରହିଛି । **Broad Gauge** ୧.୬୭୬ ମିଟର, **Metre Gauge** ୧ ମିଟର ଏବଂ **Narrow Gauge** 0.୭୬୨, 0.୬୧0 ମିଟର ।

### ଜୀବନ ଧାରଣପାଇଁ ଅଣ୍ଡା ଦରକାରୀ

ଅଣ୍ଡାରେ ଆଠ ପ୍ରକାରର ଭିଟାମିନ୍ ରହିଛି । ଏଥିରୁ **Ribonflavin** ଓ **Thiamine** ମିଳେ । ଗୋଟିଏ ୫0 ଗ୍ରାମ୍ ଓଜନର ଅଣ୍ଡା ଜୀବନ ଧାରଣପାଇଁ ପୁଷ୍ଟିକର ହିଁ ହୋଇଥାଏ ।

### Fluorasisର ଅବ୍ୟର୍ଥ ଔଷଧ Tamarind

ଇଣ୍ଡିୟାନ କାଉନସିଲ ଅଫ୍ ମେଡ଼ିକାଲ ରିସର୍ଚ୍ଚର ଡକ୍ଟର ଏସ୍. ଶ୍ରୀରାମାଚାରୀଙ୍କ ମତରେ **Fluorosis** ପାଇଁ **'Tamarind'** ଅବ୍ୟର୍ଥ ଔଷଧ ।

### ପାରା ପାଣି ଶୋଷିଥାଏ

ଏକମାତ୍ର ପକ୍ଷୀ ମଧ୍ୟରେ ପାରା ଜଳ ପାଣି ଶୋଷିନେଇ ପାନକରେ । ଅନ୍ୟ ପକ୍ଷୀମାନେ ପାଣିରେ ମୁଣ୍ଡ ବୁଡ଼ାଇ ପାଣି ପିଇଥାନ୍ତି ।

**ବିବାହିତାଙ୍କୁ ଜାଣିବା ଧଳାପିତା ଥିଲେ**

Hebridesର St. Kilda ଦ୍ୱୀପରେ ବିବାହିତାମାନେ ବିବାହ-ମୁଦ୍ରିକା (Wedding rings)ଗୁଡ଼ିକ ମୁଣ୍ଡରେ ବ୍ୟବହାର କରନ୍ତି । ମହିଳାମାନଙ୍କ ମଥାରେ ଧଳାପିତା ହୋଇଥିଲେ ବିବାହିତା ବୋଲି ବୁଝ ହେଉନ୍ତି ।

**ମହାରାଷ୍ଟ୍ରରେ ବିଚିତ୍ର ବିବାହ**

ମହାରାଷ୍ଟ୍ରର ଅମରାବତୀ ଜିଲ୍ଲାରେ Manbhao ସମ୍ପ୍ରଦାୟ ମଧ୍ୟରେ ବିବାହରେ ବିଚିତ୍ର ପ୍ରଥା ରହିଛି । ମହିଳାମାନେ ପୁରୁଷଙ୍କଠାରୁ ଦର୍ପ କିମ୍ବା ମେଡ଼ା ବ୍ୟାଗ୍ ଗ୍ରହଣ କଲେ ପତ୍ନୀ ବୋଲି ସ୍ୱୀକୃତ ହୋଇଥାଆନ୍ତି ।

**ଲଓସରେ ବିଚିତ୍ର ବିବାହ**

ଲଓସର ଖ୍ୱା ଉପଜାତି (Khwa Tribe) ମଧ୍ୟରେ କୁମାରୀମାନଙ୍କର ୧୨ ବର୍ଷ ମଧ୍ୟରେ ବର ନ ମିଳିଲେ ଝରଣା ନିକଟକୁ ନେଇଯାଇ ଜଳରେ ଦେଖୁଥିବା ପ୍ରତିବିମ୍ବ ସହିତ ବିବାହ କରାହୋଇଥାଏ । ପ୍ରକୃତରେ ବର ମିଳିବା ପର୍ଯ୍ୟନ୍ତ ଏହି ବିବାହ ଆଇନସଙ୍ଗତ ବୋଲି ଗୃହୀତ ହୁଏ ।

**ଜେଲ ଗୁଳକଙ୍କର ପି. ଏଚ. ଡି. ଡିଗ୍ରୀ**

ଜେଲ ଗୁଳକ ଅଶୋକ କୁମାର ଆରେର ରାଜପୁତ-ମରାଠା ସମ୍ପର୍କରେ ଗବେଷଣାକରି ପୁନା ବିଶ୍ୱବିଦ୍ୟାଳୟରୁ ପି. ଏଚ. ଡି. ପାଇଛନ୍ତି । ସେ ଗବେଷଣାପାଇଁ ୩୦୦୦ ଅପ୍ରକାଶିତ ରେକର୍ଡର ସାହାଯ୍ୟ ନେଇଛନ୍ତି । ବମ୍ବେରେ ବିଦ୍ୟୁତ୍ ଗୁଳିତ ଜେଲର ସେ ଗୁଳକ ।

**ସୌର ରେଫ୍ରିଜେରେଟର**

କାନାଡ଼ାର ଗୁଏଲଫ ବିଶ୍ୱବିଦ୍ୟାଳୟର Prof. Frank Theakston ସୌରଶକ୍ତିରେ ଏକ ରେଫ୍ରିଜରେଟର ଉଦ୍ଭାବନ କରିଛନ୍ତି । ଏହା ସୌର ଶକ୍ତିରେ ଉତ୍ତାପ ପାଇପାରିବ ।

**ସ୍ପେନୀୟ କବି ଏଗାର ବର୍ଷ ବେଳେ ନାଟକ ଲେଖିଥିଲେ**

ସ୍ପେନୀୟ କବି ଫେଲିକ୍ସ ଲୋପ ଡି ଭେଗ୍ କାରପିଓ ( Felix Lope de Vega Corpio ) ଜେସୁଟ୍ ସ୍କୁଲରେ ପଢ଼ୁଥିବାବେଳେ ଏଗାର ବର୍ଷ ବୟସରେ ନାଟକ ରଚନା କରିଥିଲେ । ସେ ୧୫୦୦ ନାଟକ ସଙ୍ଗକୁ ଅସଂଖ୍ୟ କବିତା ଓ ଗଦ୍ୟ ଲେଖିଥିଲେ ।

**ବିଶ୍ୱର ପ୍ରଥମ ସିଲିକନ୍ ବହି**

ଅଷ୍ଟ୍ରେଲିଆର ବୈଦ୍ୟୁତିକ ବିଶେଷଜ୍ଞମାନେ ବିଶ୍ୱରେ ପ୍ରଥମ ସିଲିକନ୍ ବହି ପ୍ରସ୍ତୁତ କରିଛନ୍ତି । ଏହାର ପୃଷ୍ଠା ଚିରିଯିବ ନାହିଁ କିମ୍ବା ନଷ୍ଟ ହୋଇଯିବ ନାହିଁ । ଏହାକୁ ସିଲିକନ୍‌ରେ ଲିପିବଦ୍ଧ କରାଯାଇଛି ଏବଂ ରେକର୍ଡର-ପଦେରେ ଏହାକୁ ପଢ଼ା ହୋଇପାରିବ ।

**ଜାପାନରେ ପୁରୁଷ ଓ ମହିଳାଙ୍କର ଦୀର୍ଘଜୀବନ**

ଗବେଷଣାରୁ ଜଣାପଡ଼ିଛି ଯେ ଜାପାନରେ ପୁରୁଷମାନେ ୭୩.୪ ବର୍ଷ ଏବଂ ମହିଳାମାନେ ୭୮.୯ ବର୍ଷ ହାରାହାରି ବାଁଇ ରହୁଛନ୍ତି । ଉତ୍ତମ ସ୍ୱାସ୍ଥ୍ୟ ସହିତ ସମ୍ପତ୍ତିମାନରେ ବ୍ୟାୟାମ ଏହି ଲୋକମାନଙ୍କୁ ଦୀର୍ଘାୟୁ କରେ ବୋଲି ନିକଟରେ ହୋଇଥିବା ଏକ ସର୍ଭେରୁ ଜଣାପଡ଼ିଛି ।

**ବୁଢ଼ିଆଣୀର ଗରଳ ସାପ ବିଷଠାରୁ ମାରମ୍ୱକ**

କଳା ବିଧବା ବୁଢ଼ିଆଣୀର ଗରଳ ସାପଠାରୁ ୧୫ ଗୁଣ ଅଧିକ ମାରମ୍ୱକ ମାତ୍ର ଆଶ୍ଚର୍ଯ୍ୟର କଥା ବୁଢ଼ିଆଣୀର ଗରଳରେ ମଣିଷ ମରିପାରେ ନାହିଁ ।

**ବାୟୁ ଦୂଷିତକରଣ ବିରୁଦ୍ଧରେ ବୃକ୍ଷର ପ୍ରାଚୀର**

ବାୟୁ ଦୂଷିତକରଣ ନହେବା ପାଇଁ ଚୀନାମାନେ ବୃକ୍ଷର କୋଟାଏ ପ୍ରାଚୀର କରିଛନ୍ତି । ଦୁଇ ହଜାର ଶତାବ୍ଦୀ ମଧ୍ୟରେ ଚୀନର ଏକ-ପଞ୍ଚମାଂଶ ବୃକ୍ଷରେ ପରିପୂର୍ଣ୍ଣ ହୋଇଯାଇପାରେ ।

**ବିଶ୍ୱରେ ଷ୍ଟାଣ୍ଡାର୍ଡ ଦିବସ**

International Organlsation for Standardization ପକ୍ଷରୁ ସମଗ୍ର ବିଶ୍ୱରେ ପ୍ରତିବର୍ଷ ଅକ୍ଟୋବର ୧୪ ତାରିଖରେ ଷ୍ଟାଣ୍ଡାର୍ଡସ ଡେ ( Standards Day ) ପାଳନ କରଯାଉଅଛି । ଜାତୀୟ ଅର୍ଥନୀତିର ଅଗ୍ରଗତି ଏବଂ ନିତିଦିନର ଜୀବନର ମାନ ବୃଦ୍ଧିଲାଗି ଏହା ପାଳନ କରଯାଏ ।

**ବିଶ୍ୱରେ ପ୍ରଥମଥର ବେଲୁନ ଉଡାଯିବା**

ଜାଁ ଫ୍ରାଙ୍କେ ଇସ ପିଲଟ୍ରି ଡି ରୋଜିଆ ( Jean-Fracois Pilatre de Rozia ) ଏବଂ ଫ୍ରାଙ୍କୋଇସ ଲରେଟ୍ ମାର୍କ୍ୟୁସ ଡି ଆରଲ୍ୟାଣ୍ଡେସ୍ ( Fracois Lauret Marquis'd Arlandes ) ଙ୍କ ଦ୍ୱାରା ୧୭୮୩ ମସିହା ନଭେମ୍ବର ୨୧ ରେ ପ୍ରଥମ ପ୍ରଥମଥର ପାଇଁ ବେଲୁନ୍ ଆକାଶରେ ଉଡା ହୋଇଥିଲା । ମଣ୍ଟଗୋଲ-ଫିଏର୍ ଭ୍ରାତା ( Montgolfier Brothers )ଙ୍କ ଦ୍ୱାରା ଏହି ବେଲୁନ୍‌ରେ ଗୋଟିଏ ଚୋକେଇ ସଂଯୋଗ କରାଯାଇଥିଲା ।

**ବିଶ୍ୱର ବୃହତ୍ତମ ବିଳାସ-ଜାହାଜ**

କୁଇନ୍ ଏଲିଜାବେଥ—୨ ହେଉଛି ବିଶ୍ୱର ବୃହତ୍ତମ ବିଳାସ—ଜାହାଜ । ଏହାର ଲମ୍ବ ୯୬୩ ଫୁଟ । ଏହା ତେଲମହଲା ବିଶିଷ୍ଟ । ଘଣ୍ଟାରେ ଏହା ୨୮ ସାମୁଦ୍ରିକ-ମାଇଲ ଯାଇପାରେ । ୬୦୮୦ ଫୁଟରେ ଏକ ସାମୁଦ୍ରିକ ମାଇଲ ହୁଏ । ରେଷ୍ଟୁରାଣ୍ଟ, ଚିକିତ୍ସାଳୟ, ସ୍ନାନାଗାର, ବ୍ୟାୟାମାଗାର, ୫୦୦ ଦର୍ଶକଙ୍କ ଲାଗି ସିନେମା, ପାଠାଗାର ଏବଂ ଅନ୍ୟାନ୍ୟ ସବୁର ସୁବିଧା ଏହି ଜାହାଜରେ ରହିଛି ।

**କଦଳୀ ଖାଇବାରେ ବିଶ୍ୱ ରେକର୍ଡ**

ଆମେରିକା ଯୁକ୍ତରାଷ୍ଟ୍ରର କାଲିଫର୍ଣ୍ଣିଆର ଡକ୍ଟର ରୋନାଲଡ୍ ଏଲ. ଅଚନ ( Dr. Ronald L Achan ) ୧୨୮ ଗ୍ରାମ ଓଜନର ୧୭ଟି କଦଳୀ ଦୁଇ ମିନିଟ ମଧ୍ୟରେ ଖାଇଦେଇ ବିଶ୍ୱରେ ଏକ ରେକର୍ଡ ସୃଷ୍ଟି କରିଛନ୍ତି ।

**ଶବ୍ଦ ପ୍ରତିରୋଧକ ଗୃହ**

ସୋଭିଏତ୍ ବୈଜ୍ଞାନିକମାନେ ଶବ୍ଦ ପ୍ରତିରୋଧକ ଗୃହ ନିର୍ମାଣ କରୁଛନ୍ତି । ଗୃହ ମଧ୍ୟରୁ ବାହାରକୁ ଶବ୍ଦ ଯାଇପାରିବ ନାହିଁ କି ବାହାରୁ କୌଣସି ଶବ୍ଦ ଭିତରକୁ ଆସିପାରିବ ନାହିଁ ।

**ଗୋଟିଏ ଗୋଡରେ ସାଇକେଲ ଚାଳନା**

୩୬ ବର୍ଷ ବୟସ୍କ ଏନ. ପାଟାନ୍‌କେ ମହାରାଷ୍ଟ୍ରର ପୁନେଠାରୁ ତାମିଲନାଡ଼ୁର କନ୍ୟାକୁମାରୀ ପର୍ଯ୍ୟନ୍ତ ଭାରତଦର୍ଶନ ସାଇକେଲ ପ୍ରତିଯୋଗିତାରେ ୧୯୬୦୦ କିଲୋମିଟର ରାସ୍ତା ଅତିକ୍ରମ କରିପାରିଛନ୍ତି । ତାଙ୍କର ଗୋଟିଏ ଗୋଡ଼ କିନ୍ତୁ କାଠରେ ତିଆରି । ଏହି ପ୍ରତିଯୋଗିତାରେ ସେ ୫୮ ଦିନ ବ୍ୟାପି ସାଇକେଲ ଚାଳନା କରିଥିଲେ ।

**ମେର୍‌ସେଡେସ୍ କାର୍‌ର ବିଶ୍ୱରେକର୍ଡ**

ଦକ୍ଷିଣ ଇଟାଲୀର ନର୍ଡୋରେ ମେର୍‌ସେଡେସ୍ କାର୍ ( Mercedes car ) ୨୦୧ ଘଣ୍ଟା ୪୦ ମିନିଟ୍ ( ପ୍ରାୟ ନଅଦିନ ) ରେ ୫୦,୦୦୦ କିଲୋମିଟର ରାସ୍ତା ଅତିକ୍ରମ କରି ରେକର୍ଡ ସୃଷ୍ଟି କରିଛି । ଏହାର ଘଣ୍ଟା ପ୍ରତି ବେଗ ଥିଲା ୧୮୦ କିଲୋମିଟର ।

**୨୫୦,୦୦୦ ଜଣ ବ୍ୟକ୍ତି ପ୍ରତିବର୍ଷ ରାସ୍ତା ଦୁର୍ଘଟଣାରେ ମରନ୍ତି**

ବିଶ୍ୱରେ ରାସ୍ତା ଦୁର୍ଘଟଣାରେ ୨୫୦,୦୦୦ ଜଣ ମଣିଷ ମୃତ୍ୟୁରେ ପଡ଼ୁଛନ୍ତି । ଜଣେ ମଣିଷ ମୃତ୍ୟୁ ମୁଖରେ ପଡ଼ିବ ବେଳେ ୧୦ରୁ ୧୫ ଜଣ ସାଂଘାତିକ ଭାବେ ଆହତ ହେଉଛନ୍ତି ଏବଂ ୩୦ରୁ ୪୦ ଜଣ ସାଧାରଣ ଭାବରେ ଆହତ ହେଉଛନ୍ତି । ବଡ଼ ବଡ଼ ହାସପାତାଳରେ ୧୦% ଶଯ୍ୟା ରାସ୍ତା ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତିଙ୍କ ଦ୍ୱାରା ପୂରଣ ହୋଇଯାଏ । ୧୫ରୁ ୨୫ ବର୍ଷ ମଧ୍ୟରେ ୩୦% ରାସ୍ତା ଦୁର୍ଘଟଣାରେ ମୃତ୍ୟୁବରଣ କରିଥାନ୍ତି ।

**ଶିଶୁର କ୍ରନ୍ଦନରେ ମାଆ କାନ୍ଦେ**

ମାଆମାନେ ଶିଶୁମାନଙ୍କର କାନ୍ଦଣା ଶୁଣି ସାମୟିକ ଭାବେ କାନ୍ଦ ପକାଉଥିବାଏନ୍ତି । ଆମେରିକା ଯୁକ୍ତରାଷ୍ଟ୍ରରେ ଜଣେ ମାଆ ତାଙ୍କର ୬ମାସର ମାସର ଶିଶୁ କାନ୍ଦଣା ଶୁଣି ସାମୟିକ ଭାବେ କାଲ ହେବାର ଜଣାପଡ଼ିଛି ।

**ମସ୍ତିଷ୍କ ଏକ ପଞ୍ଚମାଂସ ଅମ୍ଳଜାନ କ୍ଷୟ କରଏ**

ମାନବର ମସ୍ତିଷ୍କ ଓଜନ ଶରୀର ଓଜନର ପନ୍ଦର ଭାଗରୁ ଏକ ଭାଗ । ଏହା ଗୃହୀତ ଅମ୍ଳଜାନର ଏକ ପଞ୍ଚମାଂଶ କ୍ଷୟ କରଏ । ଶରୀରର ଏକ-ପଞ୍ଚମାଂଶ ତାପାଙ୍କ ମଧ୍ୟ ପ୍ରତିଦିନ କ୍ଷୟ କରଇଥାଏ ।

**ଆଫ୍ରିକାରେ ବୃହତ୍ତମ ଜଳବିଦ୍ୟୁତ୍ ଯୋଜନା**

ଆଫ୍ରିକାର କାବୋରା ବାସା ଡ୍ୟାମ୍ ( Cabora Bassa Dam )ରେ ସର୍ବବୃହତ୍ ଜଳ ବିଦ୍ୟୁତ୍ ଯୋଜନା କାର୍ଯ୍ୟକାରୀ ହୋଇଅଛି । ଏହା ବିଶ୍ୱର ୬ଷ୍ଠ ବୃହତ୍ତମ ବିଦ୍ୟୁତ୍ ଶକ୍ତି । ଏହି ବନ୍ଧ ପର୍ତ୍ତୁଗୀଜମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏଠାରେ ପ୍ରତି ସେକେଣ୍ଡରେ ୬୦୦୦ କିଉବିକ୍ ମିଟର ଜଳ ପ୍ରବାହିତ ହେଉଛି ।

**୩୧ ବର୍ଷରେ ୧୨୦ଟି ଯୁଦ୍ଧ**

୧୯୪୫ ମସିହାରୁ ୧୯୭୬ ମସିହା ମଧ୍ୟରେ ୧୨୦ଟି ଯୁଦ୍ଧ ହୋଇଅଛି । ୧୨୦ଟି ଯୁଦ୍ଧ ମଧ୍ୟରୁ ୭୪ଟିରେ ପୁଞ୍ଜିବାଦୀ ରାଷ୍ଟ୍ରମାନେ ଅଂଶ ଗ୍ରହଣ କରିଥିଲେ । ୭ଟି ଯୁଦ୍ଧରେ ସାମ୍ୟବାଦୀ ରାଷ୍ଟ୍ରମାନେ ଯୋଗ ଦେଇଥିଲେ ।

**ସୌର ଶକ୍ତିର ସାଇକେଲ**

୯୬ ସୌର ଶକ୍ତି ( 96 Solal cells ) ସୌର ସାଇକେଲ ( Solar cycle ) ଚଳାଇବା ପାଇଁ ସାହାଯ୍ୟ କରେ । ସୂର୍ଯ୍ୟ କିରଣରେ ବିନା ବ୍ୟାଟେରୀରେ ଘଣ୍ଟାକୁ ଏହି ସୌର ସାଇକେଲ ୧୩ କିଲୋମିଟର ରାସ୍ତା ଯାଇପାରିବ । ୧୨ ଭୋଲଟ୍ ବ୍ୟାଟେରୀ ସଂଯୋଗ କରାଗଲେ ୪୮ କିଲୋମିଟର ରାସ୍ତା ଅନ୍ଧକାରରେ ଯାଇପାରିବ ଏବଂ ଘଣ୍ଟାପ୍ରତି ୨୪ କିଲୋମିଟର ବେଗ ହିଁ ହେବ ।

**ବିଶ୍ୱରେ ଆଡ଼ମ୍ବରପୂର୍ଣ୍ଣ ବୃହତ୍ତମ ବାସଭବନ**

ବ୍ରୁନେଇ ( Brunei )ର ରାଜଧାନୀ ବନ୍ଦର ସେରି ବେଗୱାନ (Bandar Seri Begawan ) ରେ ୧୭୮୮ କୋଠରୀ ବିଶିଷ୍ଟ ଏକ ରାଜପ୍ରାସାଦରେ ସୁଲତାନ ହାସାନାଲ ବୋଲକିହା ( Sultan Hassanat Bolkiah ) ବାସ କରୁଛନ୍ତି । ଏହା ଏକ ଆଡ଼ମ୍ବରପୂର୍ଣ୍ଣ ପ୍ରାସାଦ ।

**କେନିଆର ଜନ୍ମହାର ବିଶ୍ୱରେ ରେକର୍ଡଭୁକ୍ତ**

କେନିଆ ( ଦକ୍ଷିଣ ଆଫ୍ରିକା )ରେ ପ୍ରତିବର୍ଷ ଶତକଡ଼ା ୪.୧ ଜନ୍ମହାର ବୃଦ୍ଧି ପାଉଛି । କୋଡ଼ିଏ ବର୍ଷ ପୂର୍ବରୁ କେନିଆ ସ୍ୱାଧୀନତା ହାସଲ କରିଛି । କେନିଆର ମହିଳାମାନେ ସାତୋଟି ସନ୍ତାନ ଗ୍ରହଣ କରିଥିଲେ । ବର୍ତ୍ତମାନ ଏବେ ପ୍ରତି ହେବାରୁ ମହିଳାମାନେ ଆଠୋଟି ସନ୍ତାନ ଗ୍ରହଣ କରନ୍ତି ।

**ସର୍ଜେଣ୍ଟ ମେଜରଙ୍କ ବଂଶ ବୃଦ୍ଧି**

୧୯୦୪ ରେ ଏଣ୍ଟୁ ଆ ମଲି ଅଫ୍ରିକୀୟ ସୈନ୍ୟବାହିନୀରେ ଭର୍ତ୍ତି ହୋଇଥିଲେ । ସେ ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଲଢ଼ାଇ କରି ସର୍ଜେଣ୍ଟ-ମେଜର ପଦ ପାଇଥିଲେ । ନିକଟରେ ଶହେବର୍ଷରୁ ଅଧିକ ବଞ୍ଚିରହି ପରଲୋକ ଗମନ କରିଛନ୍ତି । ମୃତ୍ୟୁ ପୂର୍ବରୁ ତାଙ୍କର ୧୧୬ ନାତିନାତୁଣୀ, ୩୮୬ ପଣନାତିନାତୁଣୀ, ଏବଂ ୧୧୭ ଅଣନାତିନାତୁଣୀ ହୋଇସାରିଥିଲେ । ଏବେ ତାଙ୍କର ୪ ଜଣ ସ୍ତ୍ରୀ, ୭ ଜଣ ପୁତ୍ର ଏବଂ ୧୨ ଜଣ କନ୍ୟା ଜୀବିତ ରହିଛନ୍ତି ।

**୧୦୦ଟି ରାଷ୍ଟ୍ରରେ ମୃତ୍ୟୁଦଣ୍ଡ**

ଭାରତ ସମେତ ପ୍ରାୟ ୧୦୦ଟି ରାଷ୍ଟ୍ରରେ ମୃତ୍ୟୁଦଣ୍ଡ ରହିଛି । ବେଲଜିୟମ ୧୮୬୭, ନେଦରଲାଣ୍ଡ ୧୮୭୦, ଅଷ୍ଟ୍ରିଆ ୧୯୫୦, ଡେନମାର୍କ ୧୯୩୦, ପଶ୍ଚିମ ଜର୍ମାନୀ ଓ ଫିନଲାଣ୍ଡ ୧୯୪୮ରୁ ମୃତ୍ୟୁଦଣ୍ଡ ଉଠାଇ ଦେଇଛନ୍ତି ।

**ଭାରତରେ ୬୭ ନିୟୁତ ହେକ୍ଟର ଜଙ୍ଗଲ**

ଭାରତରେ ୩୨୯ ନିୟୁତ ହେକ୍ଟର ଅଞ୍ଚଳ ମଧ୍ୟରୁ ୬୭ ନିୟୁତ ହେକ୍ଟର ଅଞ୍ଚଳରେ ଜଙ୍ଗଲ ରହିଛି । ଏହା ସମୁଦାୟ ଅଞ୍ଚଳର ଶତକଡ଼ା କୋଡ଼ିଏ ଭାଗ ।

**ବିଷାକ୍ତ ସର୍ପ ସହିତ ୭୨ ଘଣ୍ଟା**

ପୁନେର ନୀଳମ କୁମାର ଖଇରେ ୭୨ ଘଣ୍ଟା ଧରି ୭୨ ପ୍ରକାରର ବିଷାକ୍ତ ସର୍ପମାନଙ୍କ ସହ ଗୋଟାଏ କାଚ ଘରେ ରହି ବିଶ୍ୱରେ ରେକର୍ଡ ସୃଷ୍ଟି କରିପାରିଛନ୍ତି ।

**୮୭ ବର୍ଷର ପୁରୁଣା ମୋକଦ୍ଦମା**

କାଶ୍ମୀରର ମହାରାଜା ବାହାଦୁରଙ୍କର ୧୮୯୩ ମସିହାର ମୋକଦ୍ଦମା ୧୯୮୦ ଅପ୍ରେଲରେ ଭାରତର ସୁପ୍ରିମ କୋର୍ଟରେ ସମାଧାନ ହୋଇଯାଇଛି ।

**Juanita ମାଛ ମଦ୍ୟ ପିଏ**

ସ୍ପେନର Juanita ମାଛ ମଦ୍ୟପାନ କରେ । ପ୍ରତିବର୍ଷ ସାତ ହଜାର ଦର୍ଶକ ଏହି ମାଛର ମଦ୍ୟପାନ ଦେଖିବାପାଇଁ ଭ୍ରମଣରେ ଆସିଥାନ୍ତି । Juanita ମାଛ ତାହାର ମୁନିବ ହାତରୁ ମଦ ପିଇଥାଏ ।

**ଭାରତରେ ବାଘସଂଖ୍ୟା ବୃଦ୍ଧି**

ଭାରତରେ ରାଜସ୍ଥାନ, ଉତ୍ତରପ୍ରଦେଶ, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ, କର୍ଣ୍ଣାଟକ, ବିହାର, ଆସାମ, ଓଡ଼ିଶା, ମହାରାଷ୍ଟ୍ର, କେରଳ, ଅରୁଣାଚଳ ପ୍ରଦେଶ ଏବଂ ଆନ୍ଧ୍ରପ୍ରଦେଶରେ ୧୫ଟି ବ୍ୟା.ଘ ରକ୍ଷାହୋଇଛି । ୨୪, ୬୧୨ ବର୍ଗକିଲୋମିଟର କ୍ଷେତ୍ର ବ୍ୟାଘ୍ର ଏକ.ଶେ ଉଦ୍ଦିଷ୍ଟ । ୧୯୭୨ ମସିହାରେ ବାଘସଂଖ୍ୟା ୨୬୮ ଥିଲା । ୧୯୮୨ ମସିହାରେ ବାଘସଂଖ୍ୟା ବୃଦ୍ଧି ପାଇ ୮୨୪ ହୋଇଛି ।

**ଅଧଗ୍ରାମ ଓଜନର ଟ୍ରାନ୍ସମିଟର ସବୁ ସଙ୍କେତ ଦେଉଛି**

ଆମେରିକା ଯୁକ୍ତରାଷ୍ଟ୍ରର ଓହିଓସ୍ଥିତ କ୍ଲେଭଲ୍ୟାଣ୍ଡ (Cleveland)ର Dr. Carl Enger ଅଧଗ୍ରାମ ଓଜନର ଏକ ଟ୍ରାନ୍ସମିଟର ଉଦ୍ଭାବନ କରିଛନ୍ତି । ଏହା

ଏକ ଡଟିକାପରି । ସାଧାରଣେ ରେଡ଼ିଓରୁ ଏହା ପନ୍ଦର ଫୁଟ ଦୂରରୁ ହୃତପିଣ୍ଡ ସ୍ପନ୍ଦନ, ରକ୍ତଚାପ ଓ ଉତ୍ତାପ ଆଦିର ସଙ୍କେତ ଦେଇପାରିବ ।

**ବ୍ରିଟେନର ବାଙ୍ଗର ମଣିଷ**

Darius Goodwin ହେଉଛନ୍ତି ବ୍ରିଟେନର ସବୁଠାରୁ ବେଶୀ ବାଙ୍ଗର ମଣିଷ । ଯେ ଘଣ୍ଟାରେ ୫୦ ମାଇଲ ଲେଖାଏଁ ମୋଟର ସାଇକେଲ ଚାଳନା କରି-ପାରନ୍ତି ।

**ବୃହତ୍ତମ ଲୋକସଭା ନିର୍ବାଚନମଣ୍ଡଳୀ**

ଭାରତର ବୃହତ୍ତମ ଲୋକସଭା ନିର୍ବାଚନ ମଣ୍ଡଳୀ ପଶ୍ଚିମବଙ୍ଗର ଦମଦମ । ଭୋଟର ସଂଖ୍ୟା ୯୦୨,୬୧୧ ।

**ମନ୍ଦିର ପକ୍ଷୀଗୁଡ଼ିକୁ ନିରାପଦ ଆଶ୍ରୟ ଦିଏ**

ମଧ୍ୟପ୍ରଦେଶର ଖିବପୁରୀ ଜିଲ୍ଲାରେ ୨୦୩ ବର୍ଗ କିଲୋମିଟର ଅଞ୍ଚଳରେ ଏକ ମନ୍ଦିର ପ୍ରତିଷ୍ଠା କରଯାଇଛି । ସେଠାରେ ୪୧୫ ବର୍ଷରୁ ପକ୍ଷୀଗୁଡ଼ିକ ବଡ଼ ହୋଇ-ଯାଆନ୍ତି ଏବଂ ପ୍ରତିବର୍ଷ ଗୋଟିଏ ଗୋଟିଏ ଡିମ୍ବ ଦେଇଥାନ୍ତି ।

**ବିଶ୍ୱର ସୁପରିଚିତ ଲେଖକ ଲେଖିକାଙ୍କ ଅନୂଦିତ ପୁସ୍ତକ**

ଇଂରେଜ ମହିଳା ଅଗାଥା ଖ୍ରୀଷ୍ଟ (Agatha Christi) ହେଉଛନ୍ତି UNESCO ମତରେ ଜନପ୍ରିୟ ଲେଖିକା । ତାଙ୍କର ପୁସ୍ତକ ୨୨ଟି ଦେଶରେ ୨୮୨ ଥର ଅନୂଦିତ ହୋଇଅଛି । ଅନ୍ୟ ଜଣେ ଇଂରେଜ ମହିଳା ବାରବାରା କାର୍ଟଲ୍ୟାଣ୍ଡ (Barbara Cartland)ଙ୍କର ଉପନ୍ୟାସଗୁଡ଼ିକ ୧୩୭ ଥର ଅନୁଦିତ ହୋଇଛି । ସେହିପରି ଇଂରେଜ ଲେଖକ ସିମନ (Georges Simeon)ଙ୍କର ଗ୍ରନ୍ଥ ୧୦୨ ଥର ଅନୂଦିତ ହୋଇପାରିଛି ।

**ବିଶ୍ୱର ଦ୍ରୁତଗାମୀ ବ୍ୟୋମଯାନ**

ନିଉ ବ୍ରିଟିଶ ଏରୋସ୍ପେସ ବି. ଏ. ଇ. ୧୪୬ ଏୟାରଲାଇନର (New British Aerospace BAE 146 AIR LINER ହେଉଛି ବିଶ୍ୱର ଦ୍ରୁତଗାମୀ ବ୍ୟୋମଯାନ ।

**ସୋଭିଏତରେ ନୂତନ ଗୋଲାପ 'ଇନ୍ଦ୍ରଧନୁ'**

ସୋଭିଏତ ଦେଶରେ ଏବେ ନୂତନ ପ୍ରକାର ଗୋଲାପ ରୋପଣ କରଯାଉଛି । ଏହାକୁ ରଦୁଗା (Raduga)କୁହାଯାଏ । ରୁଷୀୟମାନେ ଇନ୍ଦ୍ରଧନୁ (Rainbow) କହିଥାନ୍ତି । ଏହି ଗୋଲାପ ଗଛ ଶୀଘ୍ର ବଢ଼ିଥାଏ ଏବଂ ଗୋଲାପ ଫୁଲ ଖୁବ୍‌ଶୀଘ୍ର ଫୁଟେ । ଗୁଳିଶ କିଲୋଗ୍ରାମ ଫୁଲରୁ ତେର ଗ୍ରାମ ଗୋଲାପ ଅତର ପ୍ରସ୍ତୁତ କରଯାଇପାରୁଛି ।

**ନୂତନ ବେତାର ନଙ୍ଗର**

ଜର୍ମାନର Aerospace Research and Experimental Establishment ଏକ ନୂତନ ଉଦଗ୍ରହ ବେତାର ନଙ୍ଗର କୁମ୍ଭ (Radio Buoy) ଉଦ୍ଭାବନ କରିଛନ୍ତି । ସମୁଦ୍ରରେ ଜାହାଜରୁ ଏହା ସବୁ ପ୍ରକାରର ସୂଚନା ଦେଇ-ପାରୁଛି । ଜାହାଜର ନାମ, ଜାହାଜର ଅବସ୍ଥା, ଦୁର୍ଘଟଣା ଆଦି ଜଣାଇ ଦେଉଛି ।

**୧୦୦୦ ବିଲିୟନ ବ୍ୟାରେଲ ତେଲର ସନ୍ଧାନ**

ବିଶ୍ୱରେ ୧୦୦୦ ବିଲିୟନ ବ୍ୟାରେଲ ଅର୍ଥାତ୍ ୧୩୩,୦୦୦ ନିୟୁତ ଟନ ତେଲ ମିଳୁଛି । ଭାରତର ଅଂଶ ହେଉଛି ୪୦୦ ନିୟୁତ ଟନ । ଭାରତ ୨୫୦ ବିଲିୟନ କ୍ୟୁବିକ ମିଟର ପ୍ରାକୃତିକ ବାଷ୍ପ ପାଉଛି ।

**ଆୟକରରୁ ଦୁଇଶତ କୋଟି ଟଙ୍କା**

ବେତନରୁ ଦୁଇଶତ କୋଟି ଟଙ୍କା ଆୟକର ମିଳୁଛି । ପ୍ରାୟ ନଅ ଲକ୍ଷ କରଦାତା ଦେଶରେ ରହିଛନ୍ତି । କେନ୍ଦ୍ର ଓ ରାଜ୍ୟର ଭୂରାଜସ୍ୱର ଶତକଡ଼ା ଏକ ଭାଗରୁ ଏହା କମ୍ ।

**ତ୍ରିଶ ହଜାର ବର୍ଷ ତଳେ 'Tetracycline'**

ମିଶରର ନୀଳନଦୀ ନିକଟରେ ନୁବିଆ (Nubia)ର ପାହାଡ଼ ମରୁଭୂମିରେ ତ୍ରିଶ ହଜାର ବର୍ଷ ପୂର୍ବର ଏକ ମଣିଷରୁ ଆମେରିକା ଯୁକ୍ତରାଷ୍ଟ୍ରର କୋଲୋରାଡୋ ବିଶ୍ୱବିଦ୍ୟାଳୟ (Colorado University)ର ବୈଜ୍ଞାନିକମାନେ ଆଧୁନିକ ପ୍ରତିଷେଧକ 'Tetracycline'ର ପ୍ରମାଣ ପାଇଛନ୍ତି ।

**ଊନବିଂଶ ଶତାବ୍ଦୀରେ ଡାକ ବ୍ୟବସ୍ଥାର ଆରମ୍ଭ**

ଊନବିଂଶ ଶତାବ୍ଦୀରେ ଡାକ ଚଳାଚଳ ବ୍ୟବସ୍ଥା ଭାରତବର୍ଷରେ ପ୍ରବର୍ତ୍ତିତ ହୋଇଥିଲା । ପ୍ରଥମେ ପୂର୍ତ୍ତ ବିଭାଗ (P.W. D) ଅଧୀନରେ ଡାକ ଆଦାନ ପ୍ରଦାନ ହେଉଥିଲା । ଡାକ ରନର୍‌ମାନେ ଚିଠିପତ୍ର ଡାକବଙ୍ଗଳାରୁ ନେଉଥିଲେ । ସେହି ସମୟରୁ ଡାକବଙ୍ଗଳା ରହିଅଛି । ଏବେ ଡାକବଙ୍ଗଳା ଯୋଗେ ଆଉ ଚିଠିପତ୍ର ଆଦାନପ୍ରଦାନ କରାହେଉନାହିଁ ।

**ବିଶ୍ୱ ବଜାରରେ ବାଟା ଜୋତାର ଚାହିଦା ସର୍ବପ୍ରଥମ**

କାନାଡା, ଆମେରିକା ଯୁକ୍ତରାଷ୍ଟ୍ର ଏବଂ ଇଉରୋପୀୟ ରାଷ୍ଟ୍ରଗୁଡ଼ିକରେ ବାଟା ଜୋତାର ଚାହିଦା ଯଥେଷ୍ଟ ବୃଦ୍ଧିପାଇଛି । ଭାରତରେ ବାଟା ଜୋତାର ଚାହିଦା ମଧ୍ୟ ଯଥେଷ୍ଟ । ପୃଥିବୀରେ ବାଟା ଜୋତାର ଚାହିଦା ସର୍ବପ୍ରଧାନ ।

**ଖଣିଜ ଲବଣର ଯାଦୁଘର**

ସୋଭିଏତ ଦେଶର ଇଉକ୍ରେନର Artyomovsk ସହରରେ ବିଶ୍ୱର ସମସ୍ତ ଖଣିଜ ଲବଣ ନେଇ ଏକ ଯାଦୁଘର ସ୍ଥାପିତ ହୋଇଛି । କିପରିଭାବେ ଏସବୁ ସଂଗୃହୀତ ହୋଇଛି, ଆଉ ଶିଳ୍ପ ଜଗତରେ ଏସବୁ କିଭଳି ବ୍ୟବହୃତ ହୋଇପାରିବ, ଯାଦୁଘରେ ଏହା ପୁଙ୍ଖାନୁପୁଙ୍ଖ ଭାବେ ବୁଝାଇ ଦିଆଯାଇଛି ।

**ଭାରତରେ ୧୧,୦୦୦ ଟ୍ରେନ ଚଳାଚଳ କରେ**

ନିୟମିତ ୧୧, ୦୦୦ ଟ୍ରେନ୍ ୬୧,୦୦୦ ରୁଟ୍ କିଲୋମିଟର ରାସ୍ତାରେ ଚାଲୁଅଛି । ମୋଟରେ ୭୦୭୨ଟି ଷ୍ଟେସନ ରହିଛି । ପୂର୍ବରେ ଲେଡୋ (Ledo) ଓ ଲଖପାନି (Lakhapani), ପଶ୍ଚିମରେ କାଣ୍ଡଲା (Kandla) ଉତ୍ତରରେ ଜାମ୍ମୁ, ଦକ୍ଷିଣରେ କନ୍ୟାକୁମାରୀ ପର୍ଯ୍ୟନ୍ତ ଟ୍ରେନ୍ ଚଳାଚଳ କରୁଛି ।

**ତାମିଲନାଡୁରେ ବ୍ୟାଙ୍କ ଜମାକାରୀ ସର୍ବାଧିକ**

ତାମିଲନାଡୁରେ ୧୪,୦୦୦ ଜନସାଧାରଣଙ୍କ ମଧ୍ୟରେ ଗୋଟିଏ ବ୍ୟାଙ୍କ ରହିଛି । ଭାରତରେ ୧୭,୦୦୦ ଜନସାଧାରଣଙ୍କ ମଧ୍ୟରେ ହାରାହାରି ଗୋଟିଏ ବ୍ୟାଙ୍କ ରହିଛି । ତାମିଲନାଡୁରେ ଅଧିକ ସଂଖ୍ୟାରେ ଅର୍ଥାତ୍ ୮୭% ବ୍ୟାଙ୍କରେ ଅର୍ଥ ଗଚ୍ଛିତ ରଖିଥାନ୍ତି ।

**Titan ଉପଗ୍ରହରେ ଜଳଶୂନ୍ୟ ମହାସାଗର**

ଶନିଗ୍ରହର 'Titan' ଉପଗ୍ରହ ରହିଛି । ଆମେରିକାର ବୈଜ୍ଞାନିକମାନେ Titanରେ ଗୋଟିଏ ମହାସାଗର ସନ୍ଧାନ ପାଇଛନ୍ତି ଏବଂ ମହାସାଗର ଜଳଶୂନ୍ୟ । ସେଥିରେ ଶତକଡ଼ା ୭୦ Ethane, ଶତକଡ଼ା ୨୫ Methane ଏବଂ ଶତକଡ଼ା ୫ ଯବକ୍ଷାରଯାନ ରହିଛି ।

**ଗାଜର ସ୍ୱାସ୍ଥ୍ୟପାଇଁ ଅତ୍ୟନ୍ତ ଉପକାରୀ**

ଯକୃତ୍ ଓ ଏନାମିଆ (Anaemia) ରୋଗୀମାନେ ଗାଜର ଖାଇବା ଆବଶ୍ୟକ ଗାଜର ଆଖି ଓ ଚର୍ମପାଇଁ ଅତ୍ୟନ୍ତ ଉପକାରୀ । ପାକକ୍ରିୟା ଅସୁବିଧାଜନକ ହେଉଥିଲେ ଗାଜର ଖାଇଲେ ଅସୁବିଧା ରହେନାହିଁ । ମୂତ୍ରାଶୟ ଓ ହୃତପିଣ୍ଡର ଯନ୍ତ୍ରଣା ଭୋଗୁଥିବା ରୋଗୀମାନଙ୍କ ପକ୍ଷରେ ଗାଜର (Carrot) ଯଥେଷ୍ଟ ଉପକାରୀ ।

**ବିଶ୍ୱରେ କ୍ଷୁଦ୍ରତମ ଥିଏଟର**

David Rose ଏବଂ Marcel Steine ନାମରେ ଦୁଇଜଣ ଇଂରେଜଙ୍କର 'Mad Cap Theatre' ବିଶ୍ୱର ସବୁଠାରୁ କ୍ଷୁଦ୍ର ଥିଏଟର । ସେମାନେ ମଟର ସାଇକେଲରେ ଭ୍ରମଣ କରନ୍ତି ଏବଂ ପାଖାପାଖି ହୋଇ ଏକ କାର୍ ଉପରେ ଦର୍ଶକମାନଙ୍କ ଲାଗି ସିଟ୍ ରହିଥାଏ । ପାଞ୍ଚ ଜଣରୁ ଅଧିକ ଦର୍ଶକ ହେଲେ ଥିଏଟର ଆରମ୍ଭ କରଯାଏ ।

**ଭାରତରେ ଏକ ଲକ୍ଷରେ ସାତଜଣ ଉପଗ୍ରାହୀ**

ଭାରତରେ ଉଗ୍ରପନ୍ଥୀଙ୍କର ସଂଖ୍ୟା ୫୬ ହଜାରରୁ ୫୦ ହଜାର ରହିଛନ୍ତି । ଅର୍ଥାତ୍ ପ୍ରତିଲକ୍ଷରେ ସାତଜଣ ଉଗ୍ରପନ୍ଥୀ ।

**ଅନାବୃଷ୍ଟିର ଦେଶ ଇଥିଓପିଆ**

ଇଥିଓପିଆ ଅଫ୍ରିକା ମହାଦେଶରେ ଅନାବୃଷ୍ଟିର ଦେଶ । ସେଠାରେ ବର୍ଷା ଆଦୌ ହୁଏନାହିଁ । ୧୯୮୪ ମସିହାରେ ପ୍ରଥମଥରପାଇଁ ବର୍ଷା ହୋଇଥିଲା । ଏହି ଦେଶରେ ଗୋଟିଏ ଗୋଟିଏ ସ୍ଥାନରେ ବର୍ଷକୁ ଥରେ କିମ୍ବା ଅନେକ ବର୍ଷ ଅନ୍ତରରେ ବର୍ଷା ହୋଇଥାଏ ।

**କମଳା ଲେମ୍ବୁରୁ ଆଲକହଲ ଓ ପେଟ୍ରୋଲ**

ବ୍ରାଜିଲରେ କମଳାଲେମ୍ବୁରୁ ଆଲକହଲ ଏବଂ କମଳାଲେମ୍ବୁର ଚୋପାରୁ ପେଟ୍ରୋଲ ଜାଳେଣି, ପ୍ରସ୍ତୁତ କରଯାଉଛି । ଏହି ଜାଳେଣି ଅଟୋମୋବାଇଲସ ତଥା ଅନ୍ୟ ଶିଳ୍ପଗୁଡ଼ିକରେ ବ୍ୟବହାରରେ ଲାଗିପାରିବ ।

**ହିଟଲରଙ୍କ ୟାଚ (ପୋତ) ବିକ୍ରୀ**

ଅଡ଼ଲଫ ହିଟଲରଙ୍କ ନୌକା ବିହାରପାଇଁ ୧୯୩୯ରେ ନିର୍ମିତ ହୋଇଥିବା ୟାଚ୍ ଗୋଟିଏ ଡଲାରରେ ବିକ୍ରୀ ହୋଇଛି । ନାବିକ ହୋରେସ ଗ୍ଲାସ ୧୯୭୧ରେ ୫୦୦୦ ଡଲାରରେ କିଣିଥିଲେ ଏବଂ ଏଥିରେ ୭୮ ହଜାର ଡଲାର ଖର୍ଚ୍ଚ କରିଥିଲେ । ଅର୍ଥାଭାବ ଯୋଗୁଁ ମାର୍ଯ୍ୟାଚୁସେଟସର ଜଣେ ଇଞ୍ଜିନିୟରଙ୍କୁ ଗୋଟିଏ ଡଲାରରେ ବିକ୍ରି କରିଦେଲେ ।

**ସମୁଦ୍ର ଗର୍ଭରେ ସୁଡ଼ଙ୍ଗ (ଟନେଲ)**

ଜାପାନର ହୋସୁ ଦ୍ୱୀପରୁ ହୋକାଇଡୋ ଦ୍ୱୀପକୁ ସମୁଦ୍ର ଗର୍ଭରେ ଏକ ସୁଡ଼ଙ୍ଗ ରହିଛି । ଏହାର ଲମ୍ବ ୫୩.୮୪ କିଲୋମିଟର । ରେଳ ଚଳାଚଳପାଇଁ ୨୮୦ କୋଟି ଟଙ୍କା ବ୍ୟୟରେ ଏହି ସୁଡ଼ଙ୍ଗ ଖୋଲାଯାଇଛି ।

**ପ୍ଲାଷ୍ଟିକ୍‌ରେ ରକେଟ, ବ୍ୟୋମଯାନ ଓ ଅସ୍ତ୍ରଶସ୍ତ୍ର ନିର୍ମାଣ**

ମୋଟର ପାର୍ଟସ, ଅସ୍ତ୍ରଶସ୍ତ୍ର, ବିଦ୍ୟୁତ ଉପକରଣ, ରକେଟ ଓ ବ୍ୟୋମଯାନ ଆଦି ପ୍ଲାଷ୍ଟିକରେ କରିବାପାଇଁ ଉଦ୍ୟମ ଆରମ୍ଭ ହୋଇଛି ।

**ଭାରତରେ ୯ କୋଟି ବିକଳାଙ୍ଗ**

ଦେଶରେ ଚକ୍ଷୁହୀନ, ମୂକ, ବଧିର ଏବଂ ଅନ୍ୟାନ୍ୟ ବିକଳାଙ୍ଗଙ୍କ ସଂଖ୍ୟା ୯ କୋଟି । ୧୯୮୧ ଜନଗଣନା ଅନୁସାରେ ଓଡ଼ିଶାରେ ୬୧ ହଜାର ୨୮୧ ଜଣ ବିକଳାଙ୍ଗ ଅଛନ୍ତି ।

### ସବୁଠାରୁ ବେଶୀ ଫୋନ ସୁଇଡେନରେ

ସୁଇଡେନରେ ପୃଥିବୀର ସର୍ବାଧିକ ଟେଲିଫୋନ ରହିଛି । ସୁଇଡେନରେ ଶତକଡ଼ା ୮୨।୮୩ ଫୋନ୍ ବ୍ୟବହାର କରୁଥିବାବେଳେ ଆମେରିକାରେ ଶତକଡ଼ା ୭୮।୭୯, ସୁଇଜରଲାଣ୍ଡରେ ଶତକଡ଼ା ୭୫, ଡେନମାର୍କରେ ଶତକଡ଼ା ୬୫, ଫିନ୍‌ଲ୍ୟାଣ୍ଡରେ ଶତକଡ଼ା ୫୨ଟି ଫୋନ ବ୍ୟବହାର କରୁଛନ୍ତି ।

### ଭାରତର କୁମେରୁ ଅଭିଯାନ

ଭାରତର ବୈଜ୍ଞାନିକମାନେ ଇତିମଧ୍ୟରେ ଚାରିଥର କୁମେରୁ ଅଭିଯାନ କରିସାରିଲେଣି । ଏହା ମଧ୍ୟରେ ପଞ୍ଚମ ଆଣ୍ଟାର୍ଟିକା ଅଭିଯାନପାଇଁ ପ୍ରସ୍ତୁତି ଚାଲିଲାଣି । ଗତଥର ଭାରତରୁ ୮୨ ଜଣ କୁମେରୁ ଅଭିମୁଖେ ଯାଇଥିଲେ ।

### ଦେଶରେ ୩ ଲକ୍ଷ ଶିଶୁ ଧନୁଷ୍ଟଙ୍କାରରେ ମୃତ

ପ୍ରତିବର୍ଷ ଭାରତରେ ଶିଶୁ ଜନ୍ମ ହେବାର ମାସକ ମଧ୍ୟରେ, ତିନିଲକ୍ଷ ଶିଶୁ ପ୍ରାଣ ହରାଉଛନ୍ତି ଧନୁଷ୍ଟଙ୍କାର ରୋଗରେ । ଗ୍ରାମାଞ୍ଚଳରେ ଶତକଡ଼ା ୨୦ ଲକ୍ଷ ଶିଶୁ ଏଥିରେ ମୃତ୍ୟୁବରଣ କରନ୍ତି ।

### ହିମାଳୟରେ କୋଇଲ ପକ୍ଷୀ

ହିମାଳୟ ଅଞ୍ଚଳରେ ସମୁଦ୍ର ପତ୍ତନଠାରୁ ୬୦୦୦ ଫୁଟ କିମ୍ବା ତାହାଠାରୁ ଆହୁରି ଉଚ୍ଚ ସ୍ଥାନରେ କୋଇଲ ପକ୍ଷୀ ବାସକରେ । ୧୯୬୫ରେ ଗୋଟିଏ କୋଇଲ ପକ୍ଷୀର ସନ୍ଧାନ ମିଳିଥିଲା ।

### ୧୯୮୪-୮୫ରେ ଖାଦ୍ୟଶସ୍ୟ ଉତ୍ପାଦନ

୧୯୮୪-୮୫ରେ ଭାରତରେ ଖାଦ୍ୟଶସ୍ୟ ଉତ୍ପାଦନ ୧୪ କୋଟି ୮୫ ଲକ୍ଷରୁ ୧୫ କୋଟି ୫ ଲକ୍ଷ ଟନ ମଧ୍ୟରେ ହୋଇପାରିବ । ୧୯୮୩-୮୪ରେ ୧୫ କୋଟି ୧୫ ଲକ୍ଷ ଟନ ରେକର୍ଡ ପରିମାଣରେ ଖାଦ୍ୟଶସ୍ୟ ଉତ୍ପାଦନ ହୋଇଥିଲା ।

### ଓଡ଼ିଆ ଟାଇପ ରାଇଟରର ପ୍ରତିଷ୍ଠାତା

ଓଡ଼ିଆ ଟାଇପ ରାଇଟରର ପ୍ରତିଷ୍ଠାତା ହେଉଛନ୍ତି ଜଗନ୍ନାଥ ମହାପାତ୍ର । ୧୯ ବର୍ଷ ତଳେ ତାଙ୍କର ପରଲୋକ ହୋଇଛି ।

### ପାକିସ୍ତାନର ଆଣବିକ ବୋମା

ପାକିସ୍ତାନ ୧୯୯୦ ମସିହା ସୁଦ୍ଧା ୨୦ଟି ପରମାଣୁ ବୋମା ନିର୍ମାଣ କରିପାରିବ । ୨୦୦୦ ମସିହା ସୁଦ୍ଧା ୬୦ଟି ପରମାଣୁ ବୋମା ନିର୍ମାଣରେ ପାକିସ୍ତାନ ସମର୍ଥ ହେବ ।

### ଆଣ୍ଟାର୍ଟିକାରେ ତୈଳଭଣ୍ଡାର

ବରଫାବୃତ ଆଣ୍ଟାର୍କଟିକାର ଭୂଗର୍ଭରେ ବିପୁଳ ପରିମାଣରେ ତୈଳ ଏବଂ ପ୍ରାକୃତିକ ବାଷ୍ପ ମହଜୁଦ ରହିଛି । ଭାରତୀୟ ବୈଜ୍ଞାନିକମାନେ ଅନୁସନ୍ଧାନରୁ ଏହା ଜାଣିପାରିଛନ୍ତି ।

### ପ୍ରଖ୍ୟାତ ଲେଖକ-ସାମ୍ବାଦିକ ଏବେ ଲେମ୍ବୁ ବିକ୍ରେତା

ହିନ୍ଦୀ ଲେଖକ ସାମ୍ବାଦିକ ଉପେନ୍ଦ୍ର ନାଥ ଆଶ୍କ ଏବେ ଲେମ୍ବୁ ବିକ୍ରିକରି ଜୀବିକା ନିର୍ବାହ କରୁଛନ୍ତି । ସେ ହିନ୍ଦୀରେ ଶହେଟି ପୁସ୍ତକ ଲେଖିଛନ୍ତି । କାଗଜର ଦରବୃଦ୍ଧି ଓ ପୁସ୍ତକ ବିକ୍ରୀର ସରକାରୀ ଅବହେଳାପାଇଁ ଲେଖାଲେଖି ଛାଡ଼ି-ଦେଇଛନ୍ତି ।

### କୋଟିଏ ୩୧ ଲକ୍ଷ ହେକ୍ଟରରେ ବନ୍ୟାର ପ୍ରକୋପ

ବର୍ଷବର ଦେଶରେ ଚାରିକୋଟି ହେକ୍ଟର ମଧ୍ୟରୁ ୧ କୋଟି ୩୧ ଲକ୍ଷ ୫୦ ହଜାର ହେକ୍ଟର ଅଞ୍ଚଳ ବନ୍ୟା ଦାଉରୁ କ୍ଷତିଗ୍ରସ୍ତ ହେଉଛି ।

**ହୃଦରୋଗର ଔଷଧ ଡିଗିପଲିସ**

ହୃଦରୋଗର ଅବ୍ୟର୍ଥ ଔଷଧ 'ଡିଗିପଲିସ' ବୋଲି ଦିଲ୍ଲୀର ଡାକ୍ତରମାନେ ମତ ଦେଉଛନ୍ତି । ଏହା ବିଦେଶରୁ ଆମଦାନୀ କରାଯାଉଛି ।

**ପେଙ୍ଗୁଇନଙ୍କ ସଂଖ୍ୟା ହ୍ରାସ**

ଅଷ୍ଟ୍ରେଲିଆରେ ପେଙ୍ଗୁଇନମାନଙ୍କର ସଂଖ୍ୟା ଦିନକୁ ଦିନ ହ୍ରାସ ପାଉଛି । ନିକଟରେ ବହୁସଂଖ୍ୟକ ପେଙ୍ଗୁଇନଙ୍କୁ ହତ୍ୟା କରାଯାଇଛି ।

**ଦେଶରେ ୨ କୋଟି ୩୫ ଲକ୍ଷ ବେକାର**

ଭାରତରେ ନାମ ରେଜିଷ୍ଟ୍ରୀ କରିଥିବା ବେକାରଙ୍କ ସଂଖ୍ୟା ୧୯୮୪ରେ ୨ କୋଟି ୩୫ ଲକ୍ଷ ୫୦ ହଜାରକୁ ବୃଦ୍ଧି ପାଇଛି । ୧୯୮୦ରେ ବେକାର ସଂଖ୍ୟା ଥିଲା ୧ କୋଟି ୬୨ ଲକ୍ଷ ୭୦ ହଜାର ।

**ମଧ୍ୟପ୍ରଦେଶର ପାନ୍ନା ଜିଲ୍ଲାରେ ବୃହତ୍ ହୀରାଖଣି**

ଭାରତରେ ବୃହତ୍ ହୀରାଖଣି ମଧ୍ୟପ୍ରଦେଶରେ ପାନ୍ନାଜିଲ୍ଲାରେ ରହିଛି । ଏହି ଖଣି ୯୦ ବର୍ଗ କିଲୋମିଟର ଅଞ୍ଚଳରେ ବିସ୍ତୃତ ହୋଇଛି । ଏଥିରେ ୧୨ ଲକ୍ଷ କ୍ୟାରେଟ ହୀରା ରହିଛି । ଏବେ ସୁଦ୍ଧା ୨ ଲକ୍ଷ ୨୫ ହଜାର କ୍ୟାରେଟ ହୀରା ଉତ୍ତୋଳନ କରାଯାଇଛି ।

**୧୩୫ ନିୟୁତ ବର୍ଷ ତଳର ଅଣ୍ଡା**

ଗୁଜୁରାଟର ଖେଡା ଜିଲ୍ଲାରେ ମାଟିତଳୁ ନଅଯୋଡ଼ା ଡ଼ାଇନିସର ଅଣ୍ଡା ଆବିଷ୍କାର କରାଯାଇଛି । ଅଣ୍ଡାଗୁଡ଼ିକ ୧୨ ସେଣ୍ଟିମିଟର ବ୍ୟାସବିଶିଷ୍ଟ । ଏହା ୧୩୫ ନିୟୁତ ବର୍ଷର ପୁରୁଣା ।

**ଲୁଣ ଅଧିକ ଖାଇଲେ ରୋଗ**

ଅଧିକ ଲୁଣ ଖାଇବା ଫଳରେ ଚୀନ ଦେଶରେ ଗତ ନଅ ବର୍ଷ ମଧ୍ୟରେ ଅଧିକାଂଶ 'ସରିଭ୍ରୋଲ୍ ସେସାର' ରୋଗରେ ପଡ଼ୁଛନ୍ତି । ଏହି ରୋଗରେ ଅଧିକ ଲୋକ ମୃତ୍ୟୁବରଣ କରିଛନ୍ତି ।

**ସମ୍ରାଟ ସାରଗୋନଙ୍କ ସାମ୍ରାଜ୍ୟ**

ସୁମେର୍‌ର ପଶ୍ଚିମକୁ ସେମିଟିକ୍ ନୋମାଡ଼ ଉପଜାତିର ଲୋକ ବନବାସ କରୁଥିଲେ । ଖ୍ରୀଷ୍ଟପୂର୍ବ ତିନି ହଜାର ମଧ୍ୟରେ ନେତା ସାର୍‌ଗୋନ (Sargon)ଙ୍କ ନେତୃତ୍ୱରେ ସେମାନେ ଏକତ୍ରିତ ହେଲେ । ସାର୍‌ଗୋନ୍‌ଙ୍କର ପ୍ରଥମ ଅଭିଯାନ ସୁମେର ହେଲା । ଇତିହାସରେ ସେ ପ୍ରଥମେ ସାମ୍ରାଜ୍ୟ ସ୍ଥାପନ କଲେ । ତାଙ୍କର ପ୍ରଜାମାନଙ୍କୁ ଆକାଡିଆନ (Akkadian) ବୋଲି କୁହାଗଲା ।

**ଆର୍ଯ୍ୟମାନଙ୍କର ସ୍ଥାନାନ୍ତର**

ନୂତନ ପ୍ରସ୍ତର ଯୁଗରେ ଉତ୍ତର ଇଉରୋପର ଏକ ମୌଳିକ ଭାଷା ରହିଥିଲା । ସେହି ଭାଷାରୁ ଆଧୁନିକ ଇଉରୋପୀୟ ଭାଷା ସୃଷ୍ଟି ହୋଇଅଛି । କେନ୍ଦ୍ରୀୟ ଇଉରୋପ ଏବଂ ପଶ୍ଚିମ ଏସିଆରେ କେବଳ ଗୋଟିଏ ଭାଷା ଚଳୁଥିଲା । ସେମାନେ ଆର୍ଯ୍ୟନାମରେ ପରିଚିତ ହେଲେ ଏବଂ ସେମାନଙ୍କର ଭାଷାହେଲା ଆର୍ଯ୍ୟ ଭାଷା । ଏହି ସଂପ୍ରଦାୟ ପ୍ରଥମେ ଦନୁବେ (Danube) ଓ ଦକ୍ଷିଣ ରୁଷିଆରୁ ଆସିଥିଲେ । କ୍ରମେ କ୍ରମେ ସେମାନେ ଦକ୍ଷିଣ ଆଡ଼କୁ ଅଗ୍ରସର ହେଲେ । କେନ୍ଦ୍ର ଓ ଦକ୍ଷିଣ ଇଉରୋପ ଏବଂ ଭାରତକୁ ସେମାନେ ପରେ ପରେ ବ୍ୟାପିଗଲେ ।

●